ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ

# ସଂସାର

*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**

**୬୭ ବର୍ଷ, ତୃତୀୟ ସଂଖ୍ୟା**
**ଅକ୍ଟୋବର- ୨୦୧୭**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**



*ଯୋଗାଯୋଗ*

**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧, ୯୭୭୭୩୨୬୫୬୩**

*email :*
nandaanasuya@hotmail.com
www:odisha publication.com


ଅନ୍ୟାନ୍ୟ ବିଭାଗର ଲେଖକ-- ରଶ୍ମି ସାହୁ, ରୋଜାଲିନ୍ ସାହୁ, ମାଧବୀଲତା ମଲ୍ଲିକ, ସତ୍ୟନାରାୟଣ ମହାପାତ୍ର, ଡା. ଅଜିତାନନ୍ଦ ଗୋସ୍ୱାମୀ

## ଗଳ୍ପ ଓ ଜୀବନୀ



## କବିତା



## ଭ୍ରମଣ କାହାଣୀ



## ଜ୍ଞାନବିଜ୍ଞାନ



## ମନୋରଞ୍ଜନ



## ଆମ ଚିଠି ମୁଣିରୁ

**ଜଳେଶ୍ୱର, ବାଲେଶ୍ୱରରୁ ପ୍ରଶାନ୍ତ କୁମାର ରାଉଳ-** ସଂସାର ପତ୍ରିକା ଦେଖିଲେ 'ଆହେ ଦୟାମୟ ବିଶ୍ୱ ବିହାରୀ'ର ସ୍ରଷ୍ଟା ଗୁରୁ ୰ରାମକୃଷ୍ଣ ନନ୍ଦଙ୍କ ଚରଣରେ ସ୍ୱତଃ ମଥା ନଇଁଯାଏ । ଜୁଲାଇ ମାସର ସଂସାର ପଢ଼ିଲି । ଏହା ଏକ ଭିନ୍ନ ସ୍ୱାଦର ପତ୍ରିକା ହୋଇଥିବାରୁ ବେଶି ରୁଚିକର ବୋଧ ହେଲା । 'ଭାବି ଦେଖନ୍ତୁ'ରେ ଅନେକ କଥା ଶିଖିବାର ଅଛି ।

**ପାଣ୍ଡବ ନଗର, ବଡ଼ଗଡ଼ ବ୍ରିଟ୍ କଲୋନୀରୁ ପବିତ୍ର କବି--** ପୂର୍ବଠାରୁ ଅଧିକ ଆମୋଦଦାୟକ ଭାବରେ ପ୍ରକାଶିତ ହେଉଥିବା 'ସଂସାର' ଶିଶୁ ପାଠକମାନଙ୍କୁ ଆନନ୍ଦ ଯୋଗାଇବା ସହିତ ଜୀବନକୁ ରୁଦ୍ଧିମନ୍ତ କରୁଛି । କବିତାଗୁଡ଼ିକର ଆବେଗ ଶିଶୁକୁ ପଠନପ୍ରିୟ କରିବା ସହିତ ଏକ ସୁଧାର ଚରିତ୍ର ଗଠନ କରିବାରେ ସହାୟକ ହେଉଛି ।

**ମହାଲିଙ୍ଗ, କଳାହାଣ୍ଡିରୁ ସୁଦାମ ଚରଣ ଦାଶଶର୍ମା--** ଆପଣଙ୍କ ଦ୍ୱାରା ପ୍ରକାଶିତ 'ସଂସାର' ପତ୍ରିକାଟି ସବୁ ଦିଗରୁ ମୋତେ ବହୁତ ଭଲଲାଗିଲା । ଲେଖକ ଓ ଏହାର କର୍ମକର୍ତ୍ତାମାନଙ୍କୁ ଧନ୍ୟବାଦ ।

**ହରିଶଙ୍କର ରୋଡ୍, ବଲାଙ୍ଗୀରରୁ ପ୍ରଦୀପ ଚରଣ ଦାଶ--** ଏ ମାସରେ ଲୋହିତ କନ୍ୟା ମଲାଲା, ନେବାନାହିଁ ଯଉତୁକ, ଗୁରୁଙ୍କ ହସ ଓ କାନ୍ଦ ଖୁବ୍ ଶିକ୍ଷଣୀୟ ।

**ପୁରୁଣିଆ, ନୟାଗଡ଼ରୁ ରସାନନ୍ଦ ଘଡ଼େଇ-** ଚଳିତ ମାସର ଶବ୍ଦଧନ୍ଦାଟି ଅତି ଉତ୍ତମ ହୋଇଛି । ଏଭଳି ଶବ୍ଦଧନ୍ଦା ପୂରଣ କଲେ ନିଶ୍ଚିତ ଭାବେ ମାତୃଭାଷା ଜ୍ଞାନ ବୃଦ୍ଧି ପାଇବ । ଆଶା ଓ ବିଶ୍ୱାସ ଏହି ଶିଶୁସାହିତ୍ୟ ପତ୍ରିକା ଚିରଦିନଲାଗି ପ୍ରକାଶ ପାଉ ।

ଏ ମାସ ପ୍ରଚ୍ଛଦରେ 'ଟିକି' ବିଷୟରୁ ଚିତ୍ର ପ୍ରଦତ୍ତ ।

## ❀❀ ଅଭିନନ୍ଦନ ❀❀

ଆମର ପରିଚିତ ଲେଖକ **ଶ୍ରୀ କାଞ୍ଚ ନାରାୟଣ ମହାନ୍ତି** 'ସୁଲେଖା ସାହିତ୍ୟ ସଂସଦ' ପୁରୀ, ତରଫରୁ ତାଙ୍କର ସାହିତ୍ୟ କୃତି ପାଇଁ ସମ୍ବର୍ଦ୍ଧିତ ହୋଇଛନ୍ତି ଏବଂ ଲେଖିକା **ଶ୍ରୀମତୀ ଶରତ କୁମାରୀ ସ୍ୱାଇଁ** 'ନିଖିଳ ଉତ୍କଳ ଶିଶୁ ସାହିତ୍ୟ ସଂସଦ' ଭୁବନେଶ୍ୱର ତରଫରୁ ତାଙ୍କର ଶିଶୁ ସାହିତ୍ୟ କୃତି ପାଇଁ 'ନିରଂଜନ ଦାସ ସ୍ମୃତି ସମ୍ମାନ'ରେ ସମ୍ବର୍ଦ୍ଧିତ ହୋଇଛନ୍ତି ।

ସେମାନଙ୍କର ଏ କୃତିର ଗୌରବରେ ଆମେ ଗର୍ବିତ । ତାଙ୍କର ଚଲାପଥ କୁସୁମିତ ହେଉ– ଏତିକି କାମନା କରିବା ସହିତ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛୁ ।

**--ସଂସାର 'ପରିବାର'**

ଶିଶୁକିଶୋର ପତ୍ରିକା 'ସଂସାର'ର ୬୪ତମ ବାର୍ଷିକ ଉତ୍ସବ ଚଳିତ ବର୍ଷ ଅକ୍ଟୋବର ୨୮ ତାରିଖରେ ଶ୍ରୀରାମଚନ୍ଦ୍ର ଭବନ, କଟକଠାରେ ଅନୁଷ୍ଠିତ ହେବ । ପ୍ରତିବର୍ଷ ପରି ସଂସାରର ତିନିଜଣ କୃତୀ ଲେଖକଙ୍କୁ ସମ୍ମାନ ପ୍ରଦାନ କରାଯିବା ସହିତ ଆଜୀବନ ଲେଖକୀୟ ସେବା-ସହଯୋଗ ପାଇଁ ଜଣେ ଲେଖକଙ୍କୁ 'ସଂସାର ସମ୍ମାନ' ପ୍ରଦାନ କରାଯିବାର ସ୍ଥିର କରାଯାଇଛି ।

ଏହି ଉତ୍ସବକୁ ସଫଳ କରିବା ପାଇଁ ଆମର ସଂସାରପ୍ରେମୀ ବନ୍ଧୁ, ଶୁଭେଚ୍ଛୁ, ପାଠକ-ପାଠିକା ତଥା ଏଜେଣ୍ଟ ଓ ଗ୍ରାହକମାନଙ୍କର ଉପସ୍ଥିତି କାମନା କରୁଛୁ ।

**--ସଂପାଦିକା**

# ଏ ବହିଟି କାହାର ?

ଶ୍ରୀ ସଂଗ୍ରାମ କେଶରୀ ପୃଷ୍ଟି

ଟନ୍.....ଟନ୍.....ଟନ୍.....ଟନ୍.... ସ୍କୁଲର ଘଣ୍ଟି ଚତୁର୍ଥ ପିରିୟଡ୍ ସରିବାର ସଂକେତ ଦେଲା । ପଢ଼େଇବା ପାଇଁ ନବମ ଶ୍ରେଣୀ ସାହିତ୍ୟ ବହି ଖୋଲି ନିଜକୁ ପ୍ରସ୍ତୁତ କରୁଥିଲି ମୁଁ । ଆଜି 'ପଦ୍ମ' ଶୀର୍ଷକ କବିତା ପଢ଼ାଯିବ । ପିଲାଙ୍କ ସମ୍ମୁଖରେ ଏହାକୁ କିପରି ଢଙ୍ଗରେ ଉପସ୍ଥାପନ କରିବି, ତା'କୁ ନେଇ ଚାଲିଥିଲା ମୋର ପରୀକ୍ଷାନିରୀକ୍ଷା । ପ୍ରତିଟି ଶବ୍ଦକୁ ଅନୁଧ୍ୟାନ କରୁଥିଲାବେଳେ ମୋତେ ପ୍ରକୃତିସ୍ଥ କରିଦେଲା ସ୍କୁଲ ଘଣ୍ଟା । ଏଥର ମୋତେ ଶ୍ରେଣୀକକ୍ଷକୁ ଯିବାକୁ ହେବ । ଏଣୁ ମୁଁ ହାତରେ ଧରିଲି ବହି ଓ କିଛି ଚକ୍ । ମାତ୍ର କେଇପାଦ ଆଗେଇଯାଇଛି କି ନାହିଁ ପ୍ରଧାନ ଶିକ୍ଷକ ମୋତେ ଡାକିଲେ । ମୁଁ ତୁରନ୍ତ ତାଙ୍କ ପାଖରେ ପହଞ୍ଚିଲି ଓ ମାତ୍ର ଦୁଇମିନିଟ୍ ମଧ୍ୟରେ କାମ ସାରି ଶ୍ରେଣୀକକ୍ଷରେ ପହଞ୍ଚିଲି ।

ଶ୍ରେଣୀ କକ୍ଷରେ ବିରାଜୁଥାଏ ନୀରବତା । ଏହାର ପୂର୍ବ କ୍ଲାସ୍‌ଟି ଗଣିତ ପରି ଏକ ଗାମ୍ଭୀର୍ଯ୍ୟ ବିଷୟ ଥିଲା । ଏବେ ସାହିତ୍ୟ ପରି ଏକ ରସଯୁକ୍ତ ପାଠ ପଢ଼ିବାର ସୁଯୋଗ ଆସିଥିବାରୁ ପିଲାଏ ସମ୍ଭବତଃ ଖୁସି ଥିଲେ । ସେମାନଙ୍କ ମୁହଁରୁ ଏକଥା ସ୍ପଷ୍ଟ ବାରି ହୋଇ ପଡୁଥିଲା ।

"ଆରେ ହେ, ବହି ତ ମୁଁ ଆଣିନି । ଭୁଲ୍‌ରେ ପ୍ରଧାନ ଶିକ୍ଷକଙ୍କ ଟେବୁଲ୍ ଉପରେ ଛାଡ଼ି ଦେଇ ଆସିଛି । ପୁଣି କେତେ ଯାଉଥିବି ମ ! ପିଲାଙ୍କଠୁ ଆଣି ପଢ଼ାଇଦେଲେ ଗଲା ।" ଏକଥା ଭାବି ଆଗ ଧାଡ଼ିରେ ବସିଥିବା ଜଣେ ପିଲା ହାତରୁ ତା' ସାହିତ୍ୟ ବହିଖଣ୍ଡକ ଏକରକମ ଟାଣି-ଆଣିଲି । ନ ଜାଣିଲା ପରି ପିଲାଙ୍କୁ ପଚାରିଦେଲି, "ଆଚ୍ଛା ପିଲାଏ ! ଆଜି କ'ଣ ପଢ଼ିବା ?"

–'ପଦ୍ମ' କବିତା ଗୁରୁଜୀ । ପିଲାମାନଙ୍କର ସମ୍ମିଳିତ ସ୍ୱର ଭାସିଆସିଲା ।

ଏଥର ମୁଁ ବହିର ପୃଷ୍ଠା ଓଲଟାଇ ପିଲାମାନଙ୍କୁ ମଧ୍ୟ ସଂପୃକ୍ତ ପୃଷ୍ଠା ଖୋଲିବା ପାଇଁ ନିର୍ଦ୍ଦେଶ ଦେଲି । ତା'ପରେ ଆବୃତ୍ତି କଲି ସେ କବିତାଟିକୁ । ପିଲାମାନେ ଧ୍ୟାନସ୍ଥ ହୋଇ ମୋତେ ଶୁଣୁଥା'ନ୍ତି । ମୋ ସ୍ୱରର ଯାଦୁ ସତେଯେମିତି ସେମାନଙ୍କୁ କରିଦେଇଥାଏ ମନ୍ତ୍ରମୁଗ୍ଧ ।

ଏହା ପରେ ପିଲାମାନଙ୍କ ପାଳି । ସେମାନେ କବିତା ଆବୃତ୍ତି କରିବେ । "ତୁ ପଢ଼ିଲୁ ମା ।" ମିତା ଉଦ୍ଦେଶ୍ୟରେ କହିଲି । ମିତା ସମ୍ଭ୍ରମତାର ସହିତ କବିତାକୁ ପଢ଼ିଲା । ତା' ସ୍ୱର ଥିଲା ଅତୀବ ଚମତ୍କାର । ତାକୁ ଧନ୍ୟବାଦ ଜଣାଇ ଏଥର ନାଗେଶକୁ କବିତା ପଢ଼ିବା ପାଇଁ ନିର୍ଦ୍ଦେଶ ଦେଲି । ନାଗେଶ ମଧ୍ୟ ଚିରାଚରିତ ଢଙ୍ଗରେ କବିତା ଆବୃତ୍ତି କଲା ।

ମୁଁ ସନ୍ତୁଷ୍ଟ ଥିଲି ଏଇ ପିଲାଙ୍କ ଉପରେ, ଯେଉଁମାନେ କି କବିତାଟିକୁ ଅତି ସୁନ୍ଦର ଭାବରେ ଆବୃତ୍ତି କରିପାରୁଥିଲେ । ଆଉ ଜଣେ ପଢ଼ିବାର ଆବଶ୍ୟକତା ମୁଁ ଅନୁଭବ କରୁଥିଲି । ତେଣୁ ଶ୍ରେଣୀକକ୍ଷରେ ଆଖି ବୁଲାଇ ଆଣିଲି । ମୋ ଆଖିରେ ପଡ଼ିଲା ରୋହନ୍ । ଆଗଧାଡ଼ିରେ ବସିଥିଲା ସେ । ମୁଁ ତାକୁ ନିର୍ଦ୍ଦେଶ ଦେଲି କବିତାଟି ପଢ଼ିବା ପାଇଁ । ବିଚରାର ପାଳି ଯେ ଏମିତି ଆସିଯିବ, ଏକଥା ସମ୍ଭବତଃ ସେ ଜାଣି ନ ଥିଲା । ପାଖରେ ତା'ର ବହି ନ ଥିଲା । ଅଗତ୍ୟା ସେ ବହି ପାଇଁ ସାଥୀ ପିଲାଙ୍କ ଆଡ଼କୁ ହାତ ଲମ୍ବାଇଦେଲା ।

ଏ ଦୃଶ୍ୟ ଦେଖି ମୋ ମଗଜ ଗରମ ହୋଇଗଲା ଯେମିତି । ତା'ପାଖକୁ ଧାଇଁଯାଇ ତା' ପିଠିରେ ଦୁଇ ବିଧା ଥୋଇଦେଲି । ରାଗ ତମତମ ହୋଇ କହିଲି, "ଆରେ



ଜାଣିଛୁ ଟି ଇଏ ସାହିତ୍ୟ ପାଠ ! ବିନା ବହିରେ ଏ ପାଠ ହୁଏନି । ବହି ଆଣିନୁ, କ'ଣ ଘରେ ରଖି ପୂଜା କରୁଛୁ ? ଆଉ ଦିନେ ବହି ଆଣିବୁନି ତ ମୋତେ ଚିହ୍ନିବୁ । ଆରେ.... ।"

ବୋଧହୁଏ ସେ କିଛି କହିବାକୁ ଚାହୁଁଥିଲା, ମାତ୍ର ମୋ ରାଗ ଦେଖି ସେ କିଛି କହିବାକୁ ସାହସ କରିପାରିଲା ନାହିଁ । ମୋ ଆକସ୍ମିକ ମାଡ଼ ତାକୁ ହତଚକିତ କରିଦେଲା । ଆଖି ଛଳଛଳ କରି ମନଦୁଃଖ କରିବା ଛଡ଼ା ତା'ର ଆଉ କିଛି ବାଟ ନ ଥିଲା । ସେଥିପ୍ରତି ଗୁରୁତ୍ୱ ନ ଦେଇ ଅନ୍ୟଜଣଙ୍କର ବହିରେ ତା'ଦ୍ୱାରା ଆବୃତ୍ତି କାମଟା ସଂପନ୍ନ କଲି । ଏହା ପରେ ଯଥାରୀତି ପାଠପଢ଼ା ଚାଲିଲା । ସମସ୍ତେ ଏଥିରେ ସାମିଲ୍ ଥିଲେ ଓ ପାଠକୁ ଉପଭୋଗ କରି ଚାଲିଥିଲେ । ସେମାନଙ୍କ ପାଇଁ ଏ ପାଠରେ ଅବୁଝା ବୋଲି କିଛି ନ ଥିବାର ଅନୁଭବ କଲି । କହିବାକୁ ଗଲେ, ମୋ ପାଠପଢ଼ାକୁ ନେଇ ମୁଁ ଏକରକମ ସନ୍ତୁଷ୍ଟ ଥିଲି ।

ଟନ୍.....ଟନ୍...ସ୍କୁଲ ଘଣ୍ଟି ପୁଣି ଥରେ ପିରିୟଡ୍ ସରିବାର ସଂକେତ ଦେଲା । ସେତେବେଳକୁ ମୋର ମଧ ସେଦିନର ପଢ଼ାକାମ ସରିଯାଇଥିଲା । ଅଗତ୍ୟା ମୁଁ ଶ୍ରେଣୀ କକ୍ଷରୁ ବାହାରୁ ବାହାରୁ ପିଲାମାନଙ୍କ ଉଦ୍ଦେଶ୍ୟରେ ପଚାରିଦେଲି, "ଏ ବହିଟି କାହାର ? ଆସି ନେଇଯାଅ ।"

ମୋ କଥା ଶୁଣି ସବୁ ପିଲା ବସି ରହିଥିଲେ, ଏକା ରୋହନ୍ ଧୀରେ ଧୀରେ ଉଠିବାକୁ ଉପକ୍ରମ କରୁଥିଲା । କାରଣ ଏ ବହିଟି ତା'ର ହିଁ ଥିଲା । ମୁଁ ସ୍ତବ୍ଧ ହୋଇଯାଇଥିଲି । ନିର୍ବାକ୍ ହୋଇପଡ଼ିଥିଲି । ଅନୁତାପରେ ଜଳୁଥିଲି । ଭାବୁଥିଲି, ଅଯଥାରେ ବିଚରା ପିଲାଟିକୁ ଦଣ୍ଡ ଦେଲି କାହିଁକି ? ନ ବୁଝି ନ ସୁଝି ଏ ଭୁଲ୍‌କାମ କଲି କାହିଁକି ?

ରୋହନ ମୁହଁକୁ ଭଲରେ ଚାହିଁ ପାରୁ ନ ଥିଲି ମୁଁ । ରୋହନ ମୁହଁରେ କିନ୍ତୁ ସେ ସୁନ୍ଦର ହସଟିକକ ଲାଖି ରହିଥାଏ । ଗ୍ଲାନିର ଲେଶମାତ୍ର ତାକୁ ସ୍ପର୍ଶ କରି ପାରୁ ନ ଥାଏ । ପରାସ୍ତ ସୈନିକଟି ପରି ସେଇଠୁ ଅପସରିବା ଆରମ୍ଭ କରିଦେଇଥିଲି । ମୋ ଆଖିରୁ କିନ୍ତୁ ଟପ୍ ଟପ୍ ଲୁହ ଝରିପଡୁଥାଏ । କେଇଟୋପା ତତଲା ଅମାନିଆ ଲୁହ ।

(ଏକ କଳ୍ପନାପ୍ରସୂତ କାହାଣୀ)

କିଶେର ନଗର ହାଇସ୍କୁଲ, ରାଜକିଶୋରନଗର, ଅନୁଗୋଳ-୭୫୯୧୨୬

## ନୀତି ମୁକ୍ତମାଳା

'ମୁଁ' ବୋଲି କୌଣସି ଜିନିଷ ନାହିଁ । ପିଆଜର ଚୋପା ଛଡ଼ାଇ ଶେଷରେ ପିଆଜ ବୋଲି ଯେପରି କୌଣସି ଜିନିଷ ରହେନା, 'ମୁଁ'କୁ ବିଚାର କଲେ ସେପରି 'ମୁଁ' ବୋଲି କିଛି ନଥାଏ । ଶେଷରେ ଯାହା ରହେ, ତାହା ଈଶ୍ୱର ।

—ରାମକୃଷ୍ଣ ପରମହଂସ

ପର ଦୁଃଖ ଦେଖି କାନ୍ଦେ ଯା ଅନ୍ତର
ମହତ ମଣିଷ ସେହି
ପର ହିତ ଲାଗି ଦିଏ ଯେ ଜୀବନ
ତା'ଠାରୁ ବଡ଼ କେ ନାହିଁ ।



# ତୋ ବୁଦ୍ଧି ପାଖେ ମୁଁ ଗଲି ହାରି

ଶ୍ରୀ ଦେବେନ୍ଦ୍ର ଚୌଧୁରୀ

ପୁରାଣ ଯୁଗରେ ପ୍ରଭୁ ରାମଚନ୍ଦ୍ର
ପିତୃ ସତ୍ୟ ପାଳିବାକୁ ଯାଇ
ବନସ୍ତରେ ବୁଲୁଥିଲେ ସଙ୍ଗେ ଧରି
ପତ୍ନୀ ସୀତା, ଲକ୍ଷ୍ମଣ ଭାଇ ।
ବୁଲୁବୁଲୁ ବନେ ଅଟକିଲେ ଦିନେ
ଦେଖି ଆଗେ ପମ୍ପା ସରୋବର
ସରୋବରଟିର ନୀଳ ଜଳରାଶି
ମନ କିଣିନେଲା ସଭିଙ୍କର ।
ସୁଶୀତଳ ତା'ର ଜଳେ ଦୁଇଭାଇ
ସିନାନ କରିବା ଆଶା ନେଇ
ବାହାରି ପଡ଼ିଲେ କୂଳର ପଙ୍କୁଆ
ଭୂଇଁରେ ଧନୁକୁ ପୋତିଦେଇ ।
ସିନାନ ଶେଷରେ ଧନୁକୁ ଉପାଡ଼ି
ପ୍ରଭୁ ରାମ ଯେବେ ଗଲେ ଧୋଇ
ଦେଖିଲେ, ଅଗ ତା' ନାଳି ଟକଟକ
ରକତେ ରଙ୍ଗିନ ଅଛି ହୋଇ ।
ଛାତି ଥରିଗଲା ମୁଣ୍ଡ ଘୂରିଗଲା
ଆହାରେ ଆଜି ଏ କିସ ହେଲା !
ନିଜ ଅଜାଣତେ ଧନୁଟି ତାଙ୍କର
କେଉଁ ଜୀବ ଜୀବନକୁ ନେଲା ?
ପ୍ରଭୁଙ୍କ ଆଦେଶେ ଭାଇ ଲକ୍ଷ୍ମଣ
ଧୀରେ ଧୀରେ ମାଟି ଖୋଳି ତହିଁ
ଦେଖିଲେ ବେଙ୍ଗଟେ ବସିଛି ମଉନେ
ଦେହରୁ ରୁଧିର ଯାଏ ବହି ।
ଆଦରରେ ରାମ ବେଙ୍ଗଟିକୁ ଆଣି
ରଖି ହାତ ପାପୁଲିର ପରେ
ଆଉଁଶୁ ଆଉଁଶୁ ପଚାରିଲେ ତାକୁ
ଅତି ଦୁଃଖ ଆଉ କାତରରେ ।
'ହଇରେ ବେଙ୍ଗ ତୁ ଏତେ କଷ୍ଟ-ପୀଡ଼ା
କେମିତି ଯେ କରି ସହିନେଲୁ
ଟିକିଏ ହେଲେ ବି ତୁଣ୍ଡ ଖୋଲିଲୁନି
ଦେହକୁ ପଥର କରିଦେଲୁ !
ଦେଖିଅଛି ମୁହିଁ ଦଇବାତ୍ କେବେ
ସାପ ପାଟିରେ ତୁ ଗଲେ ପଡ଼ି
ଜୀବନକୁ ତୋର ବଞ୍ଚାଇବା ପାଇଁ
ବିକଳରେ ଛାଡ଼ିଥାଉ ରଡ଼ି ।
କହ ମୋତେ ଆଜି ତୋର ସେଇ ଡାକ
ନରମି-ନୀରବେ ଗଲା କାହିଁ
ପଣ କରିଚୁ କି ଏ ମର ସଂସାରେ
ଆଉ ଦଣ୍ଡେ ନ ରହିବା ପାଇଁ ?'

ପ୍ରଭୁଙ୍କର କଥା ଶୁଣୁଥିଲା ବେଙ୍ଗ
କହିଲା ସେ ଧୀରେ ନୋଇଁ ମଥା
'ଦୟାମୟ ହରି ସଂସାରେ ସବୁରି
ତାରଣ କରତା – ପ୍ରାଣଦାତା ।
ସାପ ପାଟିରେ ମୁଁ ଥାଏ ଯେତେବେଳେ
ଡାକୁଥାଏ ଆତୁରେ ହେ ହରି
ପରାଣ ଗଲା ମୋ ଏ ଘୋର ବିପଦୁ
ଦିଅ ମୋତେ ତୁମେ ପାରି କରି !
ଆଜି ଯେତେବେଳେ ହରି ନିଜେ ମୋର
କାରଣ ଏ ମହାବିପଦର
କୁହ କାହାକୁ ମୁଁ ଡାକିବି ପ୍ରଭୁ ହେ
ମୋତେ ଏ ବେଳରେ ରକ୍ଷା କର ?'

ଚକିତରେ ଚାହିଁ ରହିଥିଲେ ରାମ
ଶୁଣୁଥିଲେ ବେଙ୍ଗଟିର କଥା
ଭାବୁଥିଲେ, ଛୋଟ ଜୀବଟିଏ ସିନା
ହେଲେ ବିଚାରରେ ବଡ଼ ମଥା ।
ଅଉଷଧ ଭରା ପତ୍ର କିଛି ଆଣି
କ୍ଷତରେ ତା'ର ସେ ରସ ମାରି
ସରାଗେ କହିଲେ, 'ବେଙ୍ଗରେ ତୋ ବୁଦ୍ଧି
ପାଖରେ ମୁଁ ଆଜି ଗଲି ହାରି ।'
ଛାଡ଼ିଦେଲେ ବେଙ୍ଗଟିକୁ ଏଥର ସେ
ଚାଲିଗଲା ବେଙ୍ଗ ଡେଇଁ ଡେଇଁ
ତିନିହେଁ ଆଗକୁ ପାଦ ବଢ଼ାଇଲେ
ପିତାଙ୍କ ଶପଥ ମନେ ନେଇ ।

ଡି/୨୦୦, କୋଏଲ ନଗର, ରାଉରକେଲା-୧୪, ସୁନ୍ଦରଗଡ଼



**ଝାଳ ବୋହିବା–** ସୁସ୍ଥ ମନୁଷ୍ୟ ଶରୀରର ତାପମାତ୍ରା ୯୮.୪° ଫା./ ୩୭° ସେ. । ଏହାଠାରୁ କମ୍ ବା ବେଶୀ ହେଲେ ଶରୀର ଅସୁସ୍ଥ ହୁଏ । ଶରୀରର ତାପମାତ୍ରା ନିୟନ୍ତ୍ରଣ ପାଇଁ ମସ୍ତିଷ୍କରେ ତାପମାନ କେନ୍ଦ୍ର ଅଛି । ଏହା ତିନିଭାଗରେ ବିଭକ୍ତ ଯଥା– ତାପମାନ କେନ୍ଦ୍ର, ଶୀତଳ କେନ୍ଦ୍ର ଓ ନିୟନ୍ତ୍ରଣ କେନ୍ଦ୍ର । କୌଣସି କାରଣରୁ ଶରୀରର ତାପମାତ୍ରା କମିଲେ ତାପମାନ କେନ୍ଦ୍ର ତତ୍ପର ହୋଇ ଉଠି ଶରୀରରେ ଥିବା ସ୍ୱତନ୍ତ୍ର ଗ୍ରନ୍ଥିଗୁଡ଼ିକୁ ନିର୍ଦ୍ଦେଶ ଦିଏ ରାସାୟନିକ ପଦାର୍ଥ ନିଃସୃତ କରିବାକୁ । ଯାହାକୁ ମାଂସପେଶୀ ଓ ଯକୃତ ଦହନ କରି ଶରୀରର ତାପମାତ୍ରା ବଢ଼ାଇଥା'ନ୍ତି । ଫଳରେ ଶରୀର ସାଧାରଣ ତାପମାତ୍ରାକୁ ଆସିଥାଏ । ସେହିପରି ତାପମାତ୍ରା ବଢ଼ିଲେ ଶୀତଳ କେନ୍ଦ୍ରର ନିର୍ଦ୍ଦେଶରେ ଝାଳବୁହା ଗ୍ରନ୍ଥିଗୁଡ଼ିକ ଝାଳ ନିସୃତ କରିଥାନ୍ତି । ଝାଳରେ ପାଣି, ୟୁରିଆ ଓ ଲବଣ ଅଂଶ ରହିଥାଏ । ଝାଳରେ ଥିବା ପାଣି ଅଂଶ ବାଷ୍ପୀଭୂତ ହୋଇ ଶରୀରର ବର୍ଦ୍ଧିତ ତାପମାତ୍ରା କମି ସାଧାରଣ ତାପମାତ୍ରାକୁ ଆସିଥାଏ । ପାଣି ବାଷ୍ପୀଭୂତ ହୋଇ ଥଣ୍ଡାର ପ୍ରଭାବ ଆଣିଥାଏ । ଏହି ପ୍ରକ୍ରିୟାରେ ଝାଳ ବାଷ୍ପୀଭୂତ ହୋଇ ଶରୀରର ବୃଦ୍ଧିପାଇଥିବା ତାପମାତ୍ରାକୁ କମାଇଥାଏ ।

**ଭୟରେ ଥରିବା–** ଏହା ଏକ ସ୍ୱାଭାବିକ ଲକ୍ଷଣ ଯେ ଶରୀର ବିପଦକୁ ଡରି ଏହାଠାରୁ ଦୂରେଇ ହୋଇ ରହିବାକୁ ଚାହେଁ । ବିପଦ ବା ଭୟ ଆସିଲେ ସ୍ନାୟୁଶକ୍ତିଗୁଡ଼ିକ ମସ୍ତିଷ୍କର କୋଷଗୁଡ଼ିକୁ ଜଣାନ୍ତି । ଉକ୍ତ କୋଷଗୁଡ଼ିକ ଶରୀରର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗଗୁଡ଼ିକୁ ନିୟନ୍ତ୍ରଣ କରିଥାଏ । ବିପଦଜନିତ ଭୟ ଆସିଲେ କୋଷଗୁଡ଼ିକର ନିର୍ଦ୍ଦେଶରେ ଦାନ୍ତଗୁଡ଼ିକ ଠକଠକ ଶବ୍ଦ କରିବା, ପାଟି ପାକୁ ପାକୁ ହେବା, ସର୍ବାଙ୍ଗ ଶରୀର ଥରିବା ଓ ଏପରିକି ବେହୋସ ହେବା ପ୍ରଭୃତି ହୋଇଥାଏ ।

-- ଡା. ଅଜିତାନନ୍ଦ ଗୋସ୍ୱାମୀ,
ଅରୁଣୋଦୟ ନଗର, କଟକ-୧୨

# ପାପ ପାଖରେ ପୁଣ୍ୟ

ଶ୍ରୀ ଲକ୍ଷ୍ମୀଚରଣ ସାମନ୍ତରାୟ

ଦୁଇଟି ଶାରୀ ଛୁଆଙ୍କୁ କାଉମାନେ ଘେରି ଖୁମ୍ପି ଚାଲିଥିଲେ । ବିଚରା ଶାରୀ ଛୁଆ ଦୁଇଟି ଅତି ବିକଳରେ ଚିଁ, ଚିଁ ଶବ୍ଦ କରୁଥାଆନ୍ତି । ଦୁଇଟି ପିଲାଙ୍କର ନଜର ପଡ଼ିଲା ପକ୍ଷୀଶାବକଙ୍କ ଉପରେ । ସେମାନେ କାଉମାନଙ୍କୁ ଘଉଡ଼ାଇ ସେମାନଙ୍କୁ ବିପଦରୁ ଉଦ୍ଧାରକଲେ । ଆଦରରେ ଶାବକ ଦୁଇଟିଙ୍କୁ ତଳୁ ଉଠାଇନେଲେ । ଉପଯୁକ୍ତ ଚିକିତ୍ସା କଲେ । ସମୟକ୍ରମେ ଶାରୀ ଛୁଆ ଦୁଇଟି ସୁସ୍ଥସବଳ ହୋଇଗଲେ । ଶାରୀ ଛୁଆ ଦୁଇଟି ଦେଖିବାକୁ ଅତି ସୁନ୍ଦର ଥିଲେ । ସେମାନଙ୍କର ଡାକ ମଧ୍ୟ ଅତି ମଧୁର ଥିଲା ।



ଦିନେ ଦୁଇ ବନ୍ଧୁ ଯଦୁ ଓ ମଧୁ ପରସ୍ପର କଥା ହେଲେ, "ଚଢ଼େଇ ଦୁଇଟି ବଡ଼ ହୋଇଗଲେଣି । ଉଡ଼ିବାର ବି ଶିଖିଗଲେଣି । ସେମାନଙ୍କୁ ଆଉ ଖୁଆଇବାକୁ ପଡୁନି । ନିଜ ପାଇଁ ଏମାନେ ଖାଦ୍ୟ ଯୋଗାଡ଼ କରିପାରିବେ । ଏବେ ଚଢ଼େଇ ଦୁଇଟିକୁ ମୁକୁଳେଇ ଦେବା । "କାହିଁକି ଆମେ ସେମାନଙ୍କୁ ବନ୍ଧନରେ ରଖିବା ?" ଏମିତି କହିବା ପରେ ପ୍ରଥମ ସାଙ୍ଗ ଯଦୁ ତା' ଚଢ଼େଇକୁ ଛାଡ଼ିଦେଲା । ଅତି ଆନନ୍ଦରେ ଉଡ଼ିଯାଇ ଶାରୀଟି ଗୋଟିଏ ଗଛ ଡାଳରେ ବସିଲା । ଦ୍ୱିତୀୟ ବନ୍ଧୁ ମଧୁ ଚଢ଼େଇଟିକୁ ନ ଛାଡ଼ି ପିଞ୍ଜରାରେ ହିଁ ରଖିଲା ।

କିଛିଦିନ ପାଇଁ ଦୁଇ ସାଙ୍ଗ ବାହାରକୁ ଯିବାକୁ ବାହାରିଲେ । ସେଠାରେ ଚାରି ପାଞ୍ଚଦିନ ରହିବାର ଯୋଜନା ମଧ୍ୟ ହେଲା । ଯିବା ପୂର୍ବରୁ ପ୍ରଥମ ସାଙ୍ଗ କହିଲା, "ଆମେ ତ ରହିବାନି, ତମ ଘରେ ବି କେହି ଲୋକବାକ ନାହାନ୍ତି । ଚଢ଼େଇର ସେବା କରିବ କିଏ ? ଭଲ ହେବ, ଚଢ଼େଇଟିକୁ ଛାଡ଼ିଦିଅ ।''

ମଧୁ କିନ୍ତୁ ଚଢ଼େଇଟିକୁ ଛାଡ଼ିବାକୁ ରାଜି ହେଲାନାହିଁ । ଚାରି ପାଞ୍ଚଦିନର ଖାଦ୍ୟ ଓ ପାଣି ସେଇ ପିଞ୍ଜରା ଭିତରେ ରଖିଦେଲା । ଚଢ଼େଇର କ'ଣ ବୁଦ୍ଧି ଅଛି ଯେ ସେ ଖାଦ୍ୟକୁ ସୁରକ୍ଷା ଦେବ ? ରଖି ରଖି ଖାଇବ ? ତା'ପାଇଁ ଦିନକର ଖାଦ୍ୟ ଯାହା, ପାଞ୍ଚଦିନର ଖାଦ୍ୟ ମଧ୍ୟ ସେଇଆ । ଟିକିଏ ଖାଏ ଓ ଅବଶିଷ୍ଟ ନଷ୍ଟ କରିଦିଏ । ଦିନକରେ ବି ସେ ସବୁ ପାଣି ଢାଳିଦେଲା । ଶେଷରେ ଏମାନେ ଫେରିଲାବେଳକୁ ଖାଇବାକୁ ନ ପାଇ ଚଢ଼େଇଟି ଶୁଖି ଶୁଖି ମରିଯାଇଛି ।

ଉଭୟ ବନ୍ଧୁ ଚଢ଼େଇ ଦୁଇଟାକୁ ଉଦ୍ଧାର କରି ପୁଣ୍ୟ ଅର୍ଜନ କରିଥିଲେ; କିନ୍ତୁ ମଧୁ ଚଢ଼େଇ ପ୍ରତି ବିଶେଷ ଆସକ୍ତ ହେଲା । ଶେଷରେ ତା'ର ପ୍ରାଣହାନିର କାରଣ ମଧ୍ୟ ହେଲା । ଏମିତି ବେଳେ ଆମର ଲୋଭ, ମୋହ ଓ ମମତା ଭଳି ଗୁଣସବୁ ପୁଣ୍ୟର ଫଳକୁ ପାପ ଆଡ଼କୁ ନେଇଯାଆନ୍ତି ।

ଖାଜାସାହି, ବ୍ରହ୍ମପୁର- ୭୬୦୦୦୧



# ମେଟ୍ରୋ ମଣିଷ- ଡକ୍ଟର ଇଂ. ଶ୍ରୀଧରନ୍

ଡାକ୍ତର ନିମାଇଁ ଚରଣ ପରିଜା

ଭାରତର ମେଟ୍ରୋ ରେଳ ଯାତ୍ରା ପାଇଁ ଅସାଧାରଣ ଦାନ ଯୋଗୁ ଡକ୍ଟର ଇଂ.ଶ୍ରୀଧରନ୍ ଭାରତରେ ବିଖ୍ୟାତ ହୋଇଛନ୍ତି । ଏହି ମେଟ୍ରୋ ମ୍ୟାନ୍‌ଙ୍କ ପ୍ରକୃତ ନାମ ହେଉଛି ଡକ୍ଟର ଇଲାତୁଭାଲ୍‌ପିଲ୍ ଶ୍ରୀଧରନ୍ । ସିଏ କେରଳର ପାଲଘାଟ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । କାକିନାଡ଼ାର ସରକାରୀ ଇଂଜିନିୟରିଂ କଲେଜରୁ ପାସ୍ କରି ଅଳ୍ପ ଦିନ ପାଇଁ ସିଭିଲ ଇଂଜିନିୟରିଂରେ ଶିକ୍ଷକତା କରିଥିଲେ ଓ ପରେ ପରେ ବମ୍ବେ ପୋର୍ଟଟ୍ରଷ୍ଟରେ ଆପ୍ରେଣ୍ଟିସ୍ ଭାବେ ଓ ଏହାର କିଛି ଦିନ ପରେ ସେ ଭାରତୀୟ ରେଳସେବାରେ ଯୋଗଦାନ କରିଥିଲେ । ତାଙ୍କୁ ୧୯୬୩ ମସିହାରେ ତାମିଲନାଡୁର ମୂଳ ସ୍ଥଳଭାଗରୁ ରାମେଶ୍ୱରକୁ ଯୋଡୁଥିବା ପାମ୍ବନ ବ୍ରିଜ୍ ମରାମତି କାର୍ଯ୍ୟର ଦାୟିତ୍ୱ ଦିଆଗଲା । ଏହାକୁ ପ୍ରସ୍ତୁତ କରିବାକୁ ତାଙ୍କୁ ୩ ମାସ ସମୟ ଦିଆଗଲା । ଏହା ଏକ ବଡ଼ ଧରଣର କଷ୍ଟ କାର୍ଯ୍ୟ ଥିଲା ଓ ତାଙ୍କ ପାଇଁ ଏହା କର୍ମକୁଶଳତାର ଆହ୍ୱାନ ଥିଲା । ଶ୍ରୀଧରନ୍ ଏହାକୁ କର୍ତ୍ତବ୍ୟର ଏକ ଦିବ୍ୟ ଆହ୍ୱାନ ମନେକରି ନିର୍ଦ୍ଧାରିତ ସମୟ ପୂର୍ବରୁ ୪୬ ଦିନ ଭିତରେ ଶେଷ କରିଥିଲେ । ଏଥିପାଇଁ ସେ ପ୍ରଶଂସାର ପାତ୍ର ହୋଇଥିଲେ ଓ ରେଳମନ୍ତ୍ରୀଙ୍କ ଠାରୁ ପୁରସ୍କୃତ ହୋଇଥିଲେ । ୧୯୭୦ ମସିହାରେ ସେ ଡେପୁଟି ଚିଫ୍ ଇଂଜିନିୟର ପଦବୀକୁ ଉନ୍ନୀତ ହୋଇଥିଲେ ଓ ତାଙ୍କୁ ଭାରତରେ ପ୍ରଥମ କରି ନିର୍ମାଣ ହୋଇଥିବା କୋଲକତା ମେଟ୍ରୋର ଦାୟିତ୍ୱ ଦିଆଯାଇଥିଲା । ଏହା ପୂର୍ବରୁ ଶ୍ରୀଧରନ କୋଚିନ ସିପ୍‌ୟାର୍ଡ଼ର ମ୍ୟାନେଜିଙ୍ଗ୍ ଡାଇରେକଟର୍ ଥାଇ 'ରାଣୀ ପଦ୍ମିନୀ' ନାମରେ ଏକ ଜଳ ଜାହାଜ ନିର୍ମାଣ କରାଇ ଉଚ୍ଚ ପ୍ରସଂଶିତ ହୋଇଥିଲେ । ସେ ଭାରତର ରେଳସେବାରୁ ୧୯୯୦ରେ ଅବସର ନେଇଥିଲେ । ରେଳସେବାରେ ଥିବାବେଳେ ସିଏ ଗୋଟିଏ ମେଗା ପ୍ରୋଜେକ୍ଟ କଙ୍କଣ ରେଲୱେ ତିଆରି କରିଥିଲେ, ଯାହାକି ମହାରାଷ୍ଟ୍ରରୁ ମାଙ୍ଗାଲୋର ପର୍ଯ୍ୟନ୍ତ ବିସ୍ତୃତ ।

ତାଙ୍କ ସମୟରେ କଙ୍କଣ ରେଲୱେ କର୍‌ପୋରେସନ୍ ଗଢ଼ାଯାଇଥିଲା । ପଶ୍ଚିମାଞ୍ଚଳ ପାର୍ବତ୍ୟ ଅଞ୍ଚଳରେ ରେଳଲାଇନ ବିଛାଇବା କାମ ଅତୀବ କଷ୍ଟକର ଥିଲା । କିନ୍ତୁ ଏହା ଶ୍ରୀଧରଙ୍କ ବୁଦ୍ଧିମତ୍ତା, ଜ୍ଞାନକୌଶଳ ଓ ନିରବିଚ୍ଛିନ୍ନ ସାଧନା ଯୋଗୁ ସମ୍ଭବ ହୋଇଥିଲା । ଏହି କାର୍ଯ୍ୟର ସଫଳତା ଉପରେ ଦୃଷ୍ଟି ଆକର୍ଷଣ କରି ସେ କହିଥିଲେ- 'ଏଥିପାଇଁ ମୁଁ କିଛି ଅଧିକ ଯୋଗ୍ୟତା ବା କୌଶଳ ଅବଲମ୍ବନ କରି ନଥିଲି ।' ସେ ସବୁବେଳେ କହନ୍ତି "ଯଦି ଜଣେ ଭଲ କାମ କରିବାକୁ ଯାଉଛି, ସେଥିରେ ଜନ ସମର୍ଥନ ଓ ସହଯୋଗ ସବୁବେଳେ ସହାୟକ ହୋଇଥାଏ ।'' ସେ କହନ୍ତି ''ମୁଁ କାମପାଇଁ ନିଶାଗ୍ରସ୍ତ ନୁହେଁ; କିନ୍ତୁ ମୋର କାମ କରିବା ପାଇଁ ଆବେଗତା ଥାଏ ଓ ପ୍ରବଳ ଆଗ୍ରହ ରହିଥାଏ, ଯାହାକି ମୋତେ ସଫଳତା ଦେଇଥାଏ ।'' ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ସମୟରେ କାମ ଶେଷ କରିବା ଏକ ଆହ୍ୱାନ ଥାଏ ।

ତାଙ୍କର ସବୁଠାରୁ ଆଖିଦୃଶିଆ କାମ ହେଉଛି ଦିଲ୍ଲୀର ମେଟ୍ରୋ ରେଲୱେ, ଯାହାକି ଆଜି ଭାରତର ଦୃଷ୍ଟାନ୍ତମୂଳକ ସଫଳତା ବୋଲି କୁହାଯିବ । ଏହା ଥିଲା ନୂଆ ଭାରତର ଉଚ୍ଚାଭିଳାଷ ସହର ଗଠନର ପରିକଳ୍ପନା । ଏହି ମେଟ୍ରୋ ରେଲୱେ ଆଗାମୀ ଦିନକୁ ଚାହିଁ, ବିଶେଷକରି ୨୦୨୧ ମସିହାର ଯୋଗାଯୋଗକୁ ଆଖିରେ ରଖି ଭୂତଳ ରେଳ ଲାଇନ, ଲିଫ୍ଟ, ପ୍ରଶସ୍ତ କରିଡର ବା ବାରଣ୍ଡା କରାଯାଇଛି । ଇଂ. ଶ୍ରୀଧରନ୍ ୧୯୯୫ରେ 'ଦିଲ୍ଲୀ ମେଟ୍ରୋ ରେଳ କରପୋରେସନ ଲିମିଟେଡ୍,ର ମ୍ୟାନେଜିଙ୍ଗ୍ ଡାଇରେକ୍ଟର ହୋଇଥିଲେ । ତାଙ୍କର କାର୍ଯ୍ୟର ସଫଳତା ହେଉଛି ଟନେଲ୍ ବୋରିଙ୍ଗ୍ ସାହାଯ୍ୟରେ ଉପରିସ୍ଥ



ଘରଗୁଡ଼ିକର କିଛି କ୍ଷତି ନକରି, ନଭାଙ୍ଗି ତାରି ତଳେ ରେଳଲାଇନ ବିଛାଇବା ।

ଦିଲ୍ଲୀ ମେଟ୍ରୋ ତିନିଲାଇନ ବିଶିଷ୍ଟ ୫୫.୩ କିଲୋମିଟର ଭୂତଳ ରେଳ ପ୍ରୋଜେକ୍ଟ । ଏହା ୧୯୯୮ରେ ଶାସ୍ତ୍ରୀ ପାର୍କଠାରୁ ଆରମ୍ଭ ହୋଇଥିଲା ଓ ଡିସେମ୍ବର ୨୦୦୨ ରେ ପ୍ରଥମ ପର୍ଯ୍ୟାୟର କାମ ଶେଷ ହୋଇଥିଲା । ୫୫ କିଲୋମିଟରରୁ ଏହାକୁ ୬୫ କି.ମି କୁ ବୃଦ୍ଧି କରାଯାଇଥିଲା । ପ୍ରଥମ ପର୍ଯ୍ୟାୟର କାମ ୭




ବର୍ଷ ୯ ମାସ ଭିତରେ ଶେଷ ହୋଇଥିଲା; କିନ୍ତୁ ଆଗରୁ ଏହାକୁ ୧୦ ବର୍ଷ ସମୟ ଲାଗିବ ବୋଲି ସ୍ଥିର କରାଯାଇଥିଲା । ଏଥିପାଇଁ ଖର୍ଚ୍ଚ ହୋଇଥିଲା ୧୦,୫୭୧ କୋଟି ଟଙ୍କା । ଏହି ମେଟ୍ରୋ ରେଳ ଲାଇନ ପୂର୍ବରେ ସଦର, ଉତ୍ତର ପଶ୍ଚିମରେ ରିଥାଲ ଓ ଦକ୍ଷିଣ ପଶ୍ଚିମରେ ଦ୍ୱାରକା ଓ କେନ୍ଦ୍ର ଦିଲ୍ଲୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଛି । ଦିଲ୍ଲୀର ମେଟ୍ରୋ ଆଜି ରାଜଧାନୀ ସହରର ମେରୁଦଣ୍ଡ ଭଳି କାମ କରୁଛି । ବର୍ତ୍ତମାନ ଦିଲ୍ଲୀ ମେଟ୍ରୋରେ ୭୦ ସେଟ୍ ଟ୍ରେନ୍ ଅଛି ଓ ପ୍ରତ୍ୟେକରେ ୪ଟି କୋଚ ଅଛି । ଏହା ସକାଳ ୬ଟାରୁ ରାତି ୧୧ ପର୍ଯ୍ୟନ୍ତ ଚଳାଚଳ କରୁଛି ଓ ଶତପ୍ରତିଶତ ସମୟ ନିର୍ଘଣ୍ଟରେ କାମ କରୁଛି । ଏହାର ପ୍ରତି କିଲୋମିଟର ପିଛା ୪୫ ଜଣ କର୍ମକର୍ତ୍ତା ଅଛନ୍ତି । ଏହାଦ୍ୱାରା ଯାତ୍ରୀମାନଙ୍କର ସୁରକ୍ଷା, ସମୟ ରକ୍ଷା ଓ ଜାଳେଣି କଷ୍ଟରୁ ରକ୍ଷାଦ୍ୱାରା ପରିବେଶର ପ୍ରଦୂଷଣ କେତେକାଂଶରେ କମ୍ ହୋଇଥାଏ । ଏହି ମେଟ୍ରୋ ରେଲୱେ, ଯାହାକି ଜାତିସଂଘର ନିୟମାବଳୀ ଅନୁସାରେ କାରବନ ପ୍ରଦୂଷଣ ରୋକିବାରେ ପ୍ରଥମ ସଫଳତା ଲାଭକରିଛି । ଦିଲ୍ଲୀମେଟ୍ରୋ କାରବନ୍ କ୍ରେଡିଟ୍ ପାଇବାରେ ସଫଳ ହୋଇପାରିଛି । ଏସବୁ କୃତିତ୍ୱ ହାସଲ କରିଥିବାରୁ ଶ୍ରୀଧରନ୍ ଜଣେ ପ୍ରଗତିଶୀଳ, ସମର୍ଥ ବ୍ୟକ୍ତି ବୋଲି ଗଣାଯାଇଥାନ୍ତି । ଏହା ବ୍ୟତୀତ ସେ ହେଉଛନ୍ତି ଜଣେ ଦୁଃସାହସିକ, ଗଭୀର ଚିନ୍ତାଶକ୍ତିପ୍ରବଣ ଇଂଜିନିୟର, ଯିଏକି ଅନ୍ୟ ସମସ୍ତଙ୍କ ଠାରୁ ପୃଥକ ବୋଲି

ଜଣାପଡି- ଯାଆନ୍ତି । ସିଏ କହିଥାନ୍ତି, "ଜଣେ କୌଣସି କାମ କରିବାକୁ ଦୃଢ଼ ଚିତ୍ତ ନହେଲେ ସିଏ ଗତିଶୀଳ ହୋଇପାରେନି ।" ଏହା ସହିତ ତାଙ୍କ ଭିତରେ ଥାଏ ନିୟନ୍ତ୍ରିତ ମାନସିକତା ଓ ବିନୟ ବ୍ୟବହାର । ତାଙ୍କ ଭଳି ବିନୟୀ ଓ ଦକ୍ଷ କର୍ମୀଙ୍କୁ କାମରେ ଲଗାଇବାରେ ସମର୍ଥ ହୋଇଥାନ୍ତି । ଦକ୍ଷ ଓ ନିଷ୍ଠାର ସହିତ କାମ କରିବା ଓ ଅନ୍ୟମାନଙ୍କୁ ଅନୁପ୍ରାଣିତ କରି କାମ କରେଇବା ତାଙ୍କ ଜୀବନ ଦର୍ଶନର ଏକ ଅନନ୍ୟ ଦିଗ ।

ଇଂ ଶ୍ରୀଧରଙ୍କ କୃତିତ୍ୱ ପାଇଁ ତାଙ୍କୁ ବହୁବାର ପୁରସ୍କୃତ କରାଯାଇଛି । ଭାରତ ସରକାର ତାଙ୍କୁ ୨୦୦୧ ରେ ପଦ୍ମଶ୍ରୀ ଓ ୨୦୦୮ ରେ ପଦ୍ମବିଭୂଷଣ ସମ୍ମାନରେ ସମ୍ମାନିତ କରିଛନ୍ତି । ଚାଭେଲିଅର ଡ଼ି ଲା ଲିଜିୟମ ଡ଼ି ଅନର ରେ ( ନାଇଟ୍ ଉପାଧିରେ) ଫ୍ରାନ୍ସ ସରକାର ତାଙ୍କୁ ସମ୍ମାନିତ କରିଛନ୍ତି । ଟାଇମ୍ ମ୍ୟାଗାଜିନ୍ ୨୦୦୩ ରେ ତାଙ୍କୁ "ହିରୋ" ବୋଲି ଘୋଷଣା କରିଛି । ସେହିପରି ୨୦୦୧ରେ ଟାଇମ୍ସ୍ ଅଫ ଇଣ୍ଡିଆ 'ମ୍ୟାନ ଅଫ ଦି ଇଅର' ସମ୍ମାନ ପ୍ରଦାନ କରିଛି । ଆଇ.ଆଇ.ଟି. ଦିଲ୍ଲୀ ଡକ୍ଟର ଅଫ ସାଇନସ ଓ ଆହୁରି ଅନେକ ସଂସ୍ଥା ତାଙ୍କୁ ସମ୍ବର୍ଦ୍ଧିତ ଓ ସମ୍ମାନିତ କରିଛନ୍ତି । ତାଙ୍କୁ ଆର୍କିଟେକ୍ଟ ଅଫ ଇଣ୍ଡିଆନ "ମେଟ୍ରୋ ମ୍ୟାନ୍" ବୋଲି ଘୋଷଣା କରିଛି । ନିକଟ ଅତୀତରେ କୋଚି ସହରରେ ମେଟ୍ରୋ ନିର୍ମାଣରେ ମୁଖ୍ୟ ପରାମର୍ଶଦାତା ହୋଇ ସେ ରେକର୍ଡ଼ ସମୟରେ କାର୍ଯ୍ୟ ସଂପୂର୍ଣ୍ଣ କରାଇଥିଲେ । ଏହା ପ୍ରଧାନ ମନ୍ତ୍ରୀଙ୍କ ଦ୍ୱାରା ଉଦଘାଟିତ ହୋଇଛି ଓ ସେ ଏଥିରେ ଆମନ୍ତ୍ରିତ ଅତିଥି ଭାବେ ଯୋଗଦାନ କରିଥିଲେ ।

ତାଙ୍କର ପରିକଳ୍ପନା, ନୀତିନିୟାମକ ବ୍ୟବସ୍ଥା, କାର୍ଯ୍ୟରେ ନିଷ୍ଠା, ନୀରବଚ୍ଛିନ ଉଦ୍ୟମ ଓ ସଫଳତା ନିଶ୍ଚିତ ଭାବେ ଭାରତର ନବନିର୍ମାଣରେ ଦୃଷ୍ଟାନ୍ତ ହୋଇ ରହିବ ।

ଅରୁଣୋଦୟ ନଗର, କଟକ-୧୨

---



## ଅଛି-ନାହିଁ

ତଳେ ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୮ଟି ପ୍ରଭେଦ ଅଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ !

*(ଉତ୍ତର ୨୦ ପୃଷ୍ଠାରେ)*

ଶ୍ରୀ ଯୁଗଳ କିଶୋର ଷଡ଼ଙ୍ଗୀ

## ❖❖ ମୁଁ ମରିବାକୁ ଚାହେଁନା

ଚୀନ୍‌ର ସମ୍ରାଟଙ୍କ ମନରେ ଏକ ନୂତନ ଚିନ୍ତାଧାରା ପ୍ରବେଶ କଲା । ସାମ୍ରାଜ୍ୟର ବିକାଶ ନିମନ୍ତେ ସେ ଜଣେ ଦାର୍ଶନିକଙ୍କୁ ପ୍ରଧାନମନ୍ତ୍ରୀ ରୂପେ ନିଯୁକ୍ତି ଦେବା ପାଇଁ ସ୍ଥିର କଲେ । କାରଣ ଦାର୍ଶନିକ ନିଜର ବିଚକ୍ଷଣ ବୁଦ୍ଧି ଓ ଦକ୍ଷତା ବଳରେ ନୂଆ ନୂଆ ପ୍ରକଳ୍ପ ହାତକୁ ନେବା ପାଇଁ ଦିଗ୍‌ଦର୍ଶନ ଦେଇପାରିବେ । ପ୍ରଜାମାନଙ୍କର ସୁଖଶାନ୍ତି ଜୀବନଯାପନ ନିମନ୍ତେ ଏହା ଉଦ୍ଦିଷ୍ଟ ।

ଦାର୍ଶନିକଙ୍କୁ ଖୋଜିବା ପାଇଁ ସମ୍ରାଟ୍ ତାଙ୍କର ପ୍ରତିନିଧିଙ୍କୁ ପଠାଇଲେ । ଏହା ଏକ ସାଧାରଣ କଥା ନୁହେଁ । ପ୍ରତିନିଧି ରାଜ୍ୟର ଚତୁର୍ଦ୍ଦିଗ ଖୋଜି ବୁଲିଲେ । ଦିନେ ହାଲିଆ ହୋଇ ନଦୀ କୂଳରେ ଥିବା ବରଗଛ ମୂଳରେ ବିଶ୍ରାମ ନେଉଥିଲେ, ସେତିକିବେଳେ ସେ ଏକ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ପାଇଲେ । ଜଣେ ଲୋକ କଇଁଛଟିଏ ହାତରେ ଧରୁଥିଲେ, ତାକୁ ପାଣିରେ ଛାଡୁଥିଲେ, ଆଣୁଥିଲେ ଓ ଖେଳୁଥିଲେ । କଇଁଚ ପାଣି ଭିତରକୁ ଗଲା ପରେ, କ'ଣକିଛି ଭାବୁଥିଲେ, ତାକୁ ଡାକୁଥିଲେ । ପ୍ରତିନିଧିଙ୍କୁ ଏହା ଆଶ୍ଚର୍ଯ୍ୟ ଲାଗିଲା ।



ଏହି ଲୋକଟିକୁ ହିଁ ସେ ଦାର୍ଶନିକ ଭାବେ ଠାବ କଲେ । ଲୋକଟିର ପାଖକୁ ଯାଇ ସମ୍ରାଟଙ୍କର ସନ୍ଦେଶ ଜଣାଇଲେ ।

ଲୋକଟି ପ୍ରତିନିଧିଙ୍କ କଥା ମନ ଦେଇ ଶୁଣୁଥିଲେ; ହେଲେ, ଖୁସି କିମ୍ବା ଦୁଃଖୀ ହୋଇ ନ ଥିଲେ । କେବଳ ସାମାନ୍ୟ ମୁରୁକି ହସିଦେଇ କହିଲେ– "ମୁଁ ଶୁଣିଛି ଯେ ତୁମ ସମ୍ରାଟଙ୍କ ମହଲରେ ଏକ କଇଁଚ କଳାକୃତି ଅଛି, ଯାହାକି ହୀରନୀଳାରେ ଖଚିତ ?" ପ୍ରତିନିଧି କହିଲେ, "ହଁ, ଏହା ତ ବହୁବର୍ଷ ହେଲାଣି । ଏହାକୁ ସ୍ୱର୍ଣ୍ଣ ସିଂହାସନରେ ଖଞ୍ଜାଯାଇଛି ।" ଲୋକଟି ପ୍ରତିନିଧିଙ୍କୁ କଥା ଶୁଣିଲେ ।

ପାଣିରେ ପହଁରୁଥିବା କଇଁଚଟିକୁ ଧରି ପ୍ରତିନିଧିଙ୍କ ପ୍ରଶ୍ନକଲେ, "ଏହାକୁ ସେ ରାଜମହଲକୁ ଯିବାକୁ କହିଲେ, ଯିବ କି ? ତୁମେ ତାକୁ ନେଇ ତା'ଦେହରେ ସୁନାପରସ୍ତ ଲଗାଇ ସିଂହାସନରେ ଖଞ୍ଜିଲେ ରାଜି ହେବ କି ?'' ପ୍ରତିନିଧି କହିଲେ, "ଏହା ଅସମ୍ଭବ । କଇଁଚ ମରିଗଲା ପରେ ସୁନାର ପରସ୍ତ ଦିଆଯାଇ ପାରିବ ।" ଏହା ଶୁଣି ଲୋକଟି କହିଲେ, "ଯାଅ, ତୁମ ସମ୍ରାଟଙ୍କ ଆଗରେ ମୋର ନିବେଦନ ଜଣାଅ ଯେ ବର୍ତ୍ତମାନ ମୁଁ ମରିବାକୁ ଚାହେଁନା । ମୋ ଶରୀରରେ ସୁନାପରସ୍ତ ଲଗାଇବା ପାଇଁ ମୋର ଇଚ୍ଛା ନୁହେଁ । ମୁଁ ବର୍ତ୍ତମାନ ଯେଉଁଠି ଅଛି, ଠିକ୍ ଅଛି । ମୁକୁଟମଣ୍ଡିତ ରାଜଶୀର ନୁହଁଇ ଶାନ୍ତିର ଆସ୍ୱାଦ । ମୁଁ ପ୍ରଧାନମନ୍ତ୍ରୀ ପଦବୀ ପାଇଁ ଲାଳାୟିତ ହେବି କାହିଁକି ? ମୋତେ ଜଣାଅଛି ଯେ ମୋର କ'ଣ କରିବାର ଅଛି । ସମାଜ ପାଇଁ ମୋର ଭୂମିକା କ'ଣ ରହିଛି ।''

ଠାବ କରିଥିବା ଦାର୍ଶନିକଙ୍କୁ ନେଇ ପାରି ନ ଥିବାରୁ ପ୍ରତିନିଧି ନିରାଶରେ ଫେରିଗଲେ । ସେଇ ଦାର୍ଶନିକଜଣଙ୍କ କିଏ ଜାଣିଛ ପିଲାଏ ? ସେ ହେଉଛନ୍ତି 'ଲା-ଓ-ସେ' । ଚୀନ୍‌ର ପ୍ରଖ୍ୟାତ ଦାର୍ଶନିକ ।

## ❖❖ ମୋ ପୁଅ ନିର୍ବୋଧ ନୁହେଁ

ପିଲାଟିର କାନକୁ କିଛି ପରିମାଣରେ ଶୁଭୁ ନ ଥିଲା । ବୟସ ମାତ୍ର ଚାରିବର୍ଷ । ବିଦ୍ୟାଳୟରେ ପାଠ ଧରି ପାରୁ ନ ଥିବାରୁ ଶିକ୍ଷକ ବିରକ୍ତ ହେଉଥିଲେ ।

ଦିନେ ତା'ର ନୋଟ୍ ଖାତାରେ ଶିକ୍ଷକ କ'ଣ ଲେଖିଦେଇ ମାଆଙ୍କୁ ଦେଖାଇବା ପାଇଁ କହିଲେ । ଛୁଟି ପରେ ପିଲା ଘରକୁ ଗଲା । ଶିକ୍ଷକଙ୍କ କଥା ମାନି ଖାତାଟିକୁ ମାଆଙ୍କୁ ଦେଖାଇଲା । ଖାତାରେ ଲେଖାଥିଲା– "ତୁମ ପୁଅ ନିର୍ବୋଧ । ତାକୁ ବିଦ୍ୟାଳୟରୁ କାଢ଼ିନିଅ ।" ଏହା ପଢ଼ି ମାଆ ବିଶେଷ ଦୁଃଖିତ ହେଲେ । କିନ୍ତୁ ପରେ ପରେ ନିରାଶ ନ ହୋଇ, ସାହସ ରଖି କହିଲେ, "ମୋ ପୁଅ ନିର୍ବୋଧ ନୁହେଁ । ତାକୁ ମୁଁ ନିଜେ ପଢ଼ାଇବି ।" ମାତ୍ର ତିନିମାସ ବିଦ୍ୟାଳୟରେ ପଢ଼ିଥିବା ପିଲାକୁ ମାଆ କାଢ଼ି ଆଣିଲେ । ପିଲାର ମନକୁ ଚିହ୍ନି ନିଜେ ପାଠ ପଢ଼ାଇ ବସିଲେ ।



ସମୟକ୍ରମେ ପିଲାର ମାନସିକ ବିକାଶ ଘଟିଲା ଓ ବୟସ ବଢ଼ିଲା ପରେ ଅନ୍ୟତ୍ର ଶିକ୍ଷାଲାଭ କଲା । କହିବାକୁ ଗଲେ, ମାଆଙ୍କ ପାଇଁ ହିଁ ସେ ପାଠଶାଠ ପଢ଼ି ଜୀବନରେ ଆଗେଇ ପାରିଥିଲେ ।

ପିଲାର ବୟସ ୬୭ ବର୍ଷ ହେଲା ସମୟର କଥା । ସେ ଆଉ ପିଲା ନ ଥିଲେ । କାରଖାନାର ଜଣେ ସୁଦକ୍ଷ ମାଲିକ । ଦିନେ କାରଖାନାରେ ନିଆଁ ଲାଗିଗଲା । ଅନେକ ଜିନିଷ, ତଥ୍ୟ ନଷ୍ଟ ହେଲା । କିନ୍ତୁ ସେ କହିଥିଲେ, "ଯାହାହେଉ ମୋର ଯାହା କିଛି ଭୁଲ୍ ନିଆଁ ଲାଗିଛି । ସବୁ ସରିଗଲା, ଶେଷ ହୋଇଗଲା ବୋଲି ମୁଣ୍ଡ କଚାଡ଼ି ହେବି କାହିଁକି ? ଭଗବାନଙ୍କୁ ଧନ୍ୟବାଦ ଯେ ମୋତେ ଆହୁରି ଆହୁରି କିଛି ନୂଆ ସୃଷ୍ଟି କରିବାର ସୁଯୋଗ ଦେଇଛନ୍ତି ।"

ସୃଜନର ଶେଷ ନାହିଁ । ଶେଷ ହିଁ ଆରମ୍ଭ । କି ସୁନ୍ଦର ମନୋଭାବ ! ଏହି ପିଲାଜଣଙ୍କ ହେଉଛନ୍ତି ଥୋମାସ୍ ଏଡିସନ୍, ଯିଏକି ଫୋନୋଗ୍ରାଫ୍‌ର ଆବିଷ୍କାରକ ଭାବରେ ସୁପରିଚିତ ।

ନୀଳଚକ୍ରନଗର, ଟିଟିଲାଗଡ଼, ବଲାଙ୍ଗିର

---

## ଟିକି କବିତା

ସସ୍ମିତା ସ୍ୱାଇଁ



ଟିକି ପିଲା ବଡ଼ ଚଗଲା
ଟିକି ପୋକଟାକୁ ଧଇଲା ।
ଟିକି ପାଦ ତାର ଚଞ୍ଚଳ
ଟିକେ ପଡ଼ିଗଲେ ବିକଳ ।
ଟିକି ପିଲା ବଡ଼ ଅବୁଝା
ଟିକି ବେଳେ କରେ ସେ ମଜା ।

ଟିକି ପିଲା ବଡ଼ ଅଝଟ
ଟିକିଏ ଧରୁନି ସିଲଟ ।
ଟିକି ଖେଳନାକୁ ଭାଙ୍ଗିବ
ଟିକିଏ କହିଲେ କାନ୍ଦିବ ।

ଟିକି ପିଲାବେଳ ଭଲରେ
ସଭିଏଁ କରନ୍ତି ଗେଲରେ ।
ଟିକି ପିଲା ବେଳ ଫେରିଆ
ମୋ ମାଆର କୋଳ ବଢ଼ିଆ ।

ବୋଧଖଣ୍ଡି ଜାଗିରି, ଶିଶିଲୋ, ବାଳକାଟି, ଖୋର୍ଦ୍ଧା



# ଗ୍ରାମ୍ୟଗୀତି

ଶ୍ରୀ କାହ୍ନୁଚରଣ ପାଣିଗ୍ରାହୀ

''ଧନଟା ପରା ମୋ ସୁନା ଝିଅଟାଲୋ
କୁଆଡ଼େ ଯାଉଛୁ ଚାଲି ?
ପବନ ସୁଅରେ ଭସେଇ ଦେଇ ତୋ
ଗହଣା ରତନ ମାଳି ।
ବଢ଼ାଇଥିଲା ଯେ ମାଆ ତୋତେ କୋଳେ
ଖୁଆଇ ଖିର ଶାକର,
କେମିତି ତାକୁ ତୁ ଛାଡ଼ିଯିବୁ ଧନ
ଛାତିକୁ କରି ପଥର ।
ଆସିଥାନ୍ତା ବର ସାଜି ପଟୁଆର
ଘୋଡ଼ା ଚଢ଼ି ଏ ଗାଆଁକୁ
ସେ ତୋର ପ୍ରେମିକ ତାକୁ ଦେଇ ଦୁଃଖ
ଚାହିଁବୁ କାହା ମୁହଁକୁ ?
''ଯାଉଛି ମାଆ ମୁଇଁ ଦୂର ବନଭୂଇଁ
ମୋତେ ତା'ର ମୁହଁ ଦିଶେ,
ଚମ୍ପା କଢ଼ି ସବୁ ସେ ରାଇଜେ ମାଆ
ଡାଳ ଭାଙ୍ଗି ଫୁଟି ହସେ ।
ସେ ନଈ ପଠାରେ କୋଇଲିର ବାସ
ଶୁଣାଏ ତା ସ୍ୱର କୁହୁ,
କଇଁଫୁଲ ହସେ ପଦୁଅଁ ବିକଶେ
କିସ ଲୋଡ଼ା ମୋର ଆଉ ?
କାନେ ମୋ ବାଜୁଛି ସେ ଯେଉଁ ଶବଦ
ତୁ କି ପାରୁନାହୁଁ ଶୁଣି,
ପରୀ ରାଇଜର ଲୋକ ସବୁ ମୋତେ
ମନେ ହେଉଛନ୍ତି ଗୁଣି ।''
''ହସଖୁସିର ଏ ଦୁନିଆ ବୋଲି ତୁ
ଜାଣିନାହୁଁ କିରେ ଧନ,
ସୁଖୀ ସଂସାରରେ ସୁଖେ ଚଳିବାକୁ
ତୋର କି ନ ବଳେ ମନ ?
ବାହା ପୁଆଣିର ନାଚକୁଦ ସାଙ୍ଗେ
ଗୀତ ଥାଏ ନାନାବାଇ
ଆରାମର ବେଳା ଆସେ ବେଳେବେଳେ
ଚନ୍ଦନର ବାସ ନେଇ ।
ନାରଙ୍ଗୀ ରଙ୍ଗର ଶାଢ଼ୀ ତୋ ଦେହର
ଝଟକାଇ ରୁପା ଜରି,
ତନ୍ତରେ ଲାଗିଚି ଚୁଲିରେ ବସିଛି
ବାହାଘର ପିଠା ଖିରି ।''
''ଶୁଣାନା ମାଆ ତୁ ଆଉ ସେ ଗୀତିକା
ଅଢ଼େଇଦିନିଆ ସିଏ,
ଆଜି ପାଇଁ ଯିଏ ମନ ଉଲୁସାଏ
କାଲିକି ଯାତନା ଦିଏ ।



# ସନ୍ଦେହ ମଣିଷର ବଡ଼ ଶତ୍ରୁ

ଶ୍ରୀମତୀ ବସନ୍ତ ମିଶ୍ର

ବିନୟ ଓ ସୁବାସ ଗାଁ ବିଦ୍ୟାଳୟରେ ସପ୍ତମ ଶ୍ରେଣୀରେ ପଢ଼ନ୍ତି । ଦୁହେଁ ଭଲ ପଢ଼ିବା ସାଙ୍ଗକୁ ବକ୍ତୃତା, କ୍ରୀଡ଼ା, ଚିତ୍ରାଙ୍କନ, ସଂଗୀତ, କୁଇଜ୍ ଆଦି ପ୍ରତ୍ୟେକ କ୍ଷେତ୍ରରେ ଭଲ ପ୍ରଦର୍ଶନ କରନ୍ତି । ତେବେ ବିନୟ ଶ୍ରେଣୀରେ ପ୍ରଥମ ହେଲେ ସୁବାସ ଦ୍ୱିତୀୟ ହୁଏ ତ ସୁବାସ ପ୍ରଥମ ହେଲେ ବିନୟ ଦ୍ୱିତୀୟ ସ୍ଥାନରେ ରହେ । ସେଥିପାଇଁ ବିଦ୍ୟାଳୟର ପ୍ରତ୍ୟେକ ଶିକ୍ଷକ ସେମାନଙ୍କୁ ସ୍ନେହ ଓ ଆଦର କରନ୍ତି ।

ଦୁଇଜଣଙ୍କ ଘର ପାଖାପାଖି ହୋଇଥିବାରୁ ସେମାନେ ସାଙ୍ଗ ହୋଇ ସ୍କୁଲକୁ ଯାଆନ୍ତି, ପଢ଼ନ୍ତି, ଖେଳନ୍ତି ଓ ବୁଲନ୍ତି ମଧ୍ୟ । ମୋଟ ଉପରେ କହିବାକୁ ଗଲେ, ସେମାନେ ପରସ୍ପରର ଭଲ ସାଙ୍ଗ । ଜଣେ ଅନ୍ୟଜଣଙ୍କୁ ନ ଦେଖିଲେ ମୁହୂର୍ତ୍ତେ ରହିପାରନ୍ତି ନାହିଁ । ମାତ୍ର ବିନୟ ଅତି ଧୀର ଓ ନମ୍ର ସ୍ୱଭାବର ହୋଇଥିବାବେଳେ ସୁବାସ ସାମାନ୍ୟ କ୍ରୋଧୀ ସ୍ୱଭାବର । ତାଙ୍କ ଶ୍ରେଣୀରେ ଅମର ନାମକ ପିଲାଟିଏ ପଢୁଥାଏ । ସେ ଭଲ ପାଠ ପଢ଼େନାହିଁ କି ବିଦ୍ୟାଳୟରେ ଶିକ୍ଷକ ଦେଇଥିବା ପାଠ ମଧ୍ୟ କରି ଆସେନାହିଁ । ଏହା ଛଡ଼ା କ୍ରୀଡ଼ା, ସଂଗୀତ, ଚିତ୍ରାଙ୍କନ ଆଦି କୌଣସି ବିଷୟରେ ବି ଉତ୍ତମ ପ୍ରଦର୍ଶନ କରେନାହିଁ । ସେଥିପାଇଁ ବିଦ୍ୟାଳୟର କୌଣସି ଶିକ୍ଷକ ତାକୁ ଆଦର କରନ୍ତି ନାହିଁ ।

ବିନୟ ଓ ସୁବାସ ଭଲ ପଢୁଥିବାରୁ ଏବଂ ସବୁ ଶିକ୍ଷକ ସେମାନଙ୍କୁ ଆଦର କରୁଥିବାରୁ ଅମର ମନରେ ରାଗ ଓ ହିଂସା ଜାତ ହୁଏ । ସେ ସେମାନଙ୍କୁ ହଇରାଣ କରିବା ପାଇଁ ଓ ସେମାନଙ୍କ ମଧ୍ୟରେ କଳି ଲଗାଇବା ପାଇଁ ସବୁବେଳେ ଉପାୟ ଖୋଜୁଥାଏ ଆଉ ଯୋଜନା ବି କରୁଥାଏ ।

କିଛିଦିନ ପରେ ବିନୟ ବ୍ୟାଗରୁ ଗୋଟିଏ ପରେ ଗୋଟିଏ ଜିନିଷ ଯଥା– ବହି, ଖାତା, ପେନ୍‌ସିଲ୍ ଓ କଲମ ଆଦି ଚୋରି ହେବାକୁ ଲାଗିଲା । ସୁବାସ ବ୍ୟାଗରୁ ମଧ୍ୟ ତଦନୁରୂପ ଗୋଟାଏ ପରେ ଗୋଟାଏ ଜିନିଷ ଚୋରି ହେବାର ଲାଗିଲା । ବିନୟ ଓ ସୁବାସ ଗୋଟିଏ ବେଞ୍ଚରେ ପାଖାପାଖି ବସୁଥିବାରୁ ବିନୟ ସୁବାସକୁ, ସୁବାସ ବିନୟକୁ ଚୋରି ପାଇଁ ସନ୍ଦେହ କରିବାକୁ ଲାଗିଲେ । ଆଗଭଳି ସେମାନଙ୍କ ଭିତରେ ପରସ୍ପର ପ୍ରତି ଆଉ ଆନ୍ତରିକତା ରହିଲା ନାହିଁ । ଉଭୟ ଉଭୟଙ୍କୁ କଥା କହିବା ମଧ୍ୟ ଧୀରେ ଧୀରେ ବନ୍ଦ କରିଦେଲେ । ଯେହେତୁ ଦୁଇଜଣ ଘନିଷ୍ଠ ସାଙ୍ଗ ଥିଲେ, କେହି କାହା ମନରେ ଆଘାତ ଦେବା ପାଇଁ ଭରସି କରି ଚୋରି ବିଷୟରେ କିଛି ପଚାରୁ ନ ଥା'ନ୍ତି ।

---

ତା'ଠାରୁ ଅଧିକା ଶହେ ଗୁଣ ମିଠା
ବନଭୂଇଁର ସେ ଗୀତି,
ଛନ୍ଦ ତୋଳେ ସେଇ ମଧୁର ସ୍ୱରରେ
ଗିରି ଝରଣାର ଗତି ।
ଆଉ ତୁ ମାଆଲୋ ଲଗାନା ତୋ ଡୋରି
ଏ ରାଇଜ ନୁହେଁ ମୋର,
ପରୀ ରାଇଜରୁ ଡକରା ମୋ ପାଇଁ
ଆସିଲାଣି ବାରବାର ।''

(ସରୋଜିନୀ ନାଇଡୁଙ୍କ ରଚିତ ଇଂରାଜୀ କବିତା 'Village Song'ର ଓଡ଼ିଆ ମର୍ମାନୁବାଦ ।)

ବିରୁହାଁ, ଜାହାଙ୍ଗୀର, ଧାମନଗର, ଭଦ୍ରକ

ଅମର ଏସବୁ ଦେଖି ମନେ ମନେ ଭାରି ଖୁସି ହେଉଥାଏ । ଥରେ ସୁବାସକୁ ତା'ର ବାପା ଜନ୍ମଦିନରେ ଉପହାର ଦେଇଥବା ଦାମୀ କଲମଟି ବ୍ୟାଗରୁ ଚୋରି ହୋଇଗଲା । ତା'ର ମନ ଭାରି ଦୁଃଖ ହେଲା । ସେ ବିନୟକୁ ସନ୍ଦେହ କରି ଦୋଷୀ ଭାବିଲା । ରାଗ ସମ୍ଭାଳି ନ ପାରି ଅନେକ ଗାଳିଦେବା ସଙ୍ଗେ ସଙ୍ଗେ ତା' ଉପରକୁ ହାତ ଉଠାଇବାକୁ ବି ପଛେଇଲା ନାହିଁ । ବିନୟ କଲମଟି ଚୋରି କରିନି ବୋଲି ଯେତେ ବୁଝାଇଲେ ମଧ୍ୟ ସେ ବୁଝିଲା ନାହିଁ । ବାଧ୍ୟ ହୋଇ ବିନୟ ଶ୍ରେଣୀ ଶିକ୍ଷକଙ୍କ ନିକଟରେ



ସବୁ କଥା ଜଣାଇଲା । ତା' ବ୍ୟାଗରୁ ବି ବହୁ ଜିନିଷ ଚୋରି ହୋଇଥିବା କଥା ଜଣାଇଲା ।

ଶ୍ରେଣୀ ଶିକ୍ଷକ ବିନୟ ଓ ସୁବାସ ଉଭୟଙ୍କୁ ଖୁବ୍ ଭଲ ଭାବରେ ଜାଣନ୍ତି । ସେମାନେ ଯେ ପରସ୍ପରର ବ୍ୟାଗରୁ ଚୋରି କରିଥିବେ– ଏ କଥା ତାଙ୍କର ବିଶ୍ୱାସ ହେଲାନାହିଁ । ସେ ହଠାତ୍ ଶ୍ରେଣୀରେ ପ୍ରବେଶ କରି ଜଣ ଜଣ କରି ଡାକି ସବୁ ଛାତ୍ରଛାତ୍ରୀଙ୍କ ବ୍ୟାଗ ଖୋଲି ଦେଖାଇବାକୁ ଆଦେଶ ଦେଲେ । ଏମିତି ହେବ ବୋଲି ତ ଅମର ଆଗରୁ ପ୍ରସ୍ତୁତ ନ ଥିଲା । ତା' ବ୍ୟାଗ୍ ଖୋଲିବାରୁ ବିନୟ ଓ ସୁବାସ ଉଭୟଙ୍କର ଚୋରି ହୋଇଥିବା ଜିନିଷମାନ ବାହାରିଲା । ବାଧ୍ୟ ହୋଇ ଅମର ସେମାନଙ୍କ ଭିତରେ କଳି ଲଗାଇବା ପାଇଁ ହିଂସାରେ ସେମାନଙ୍କ ବ୍ୟାଗରୁ ଚୋରି କରିଛି ବୋଲି ଶିକ୍ଷକଙ୍କ ଆଗରେ ମାନିଗଲା ଓ ସେଥିପାଇଁ ମନଦୁଃଖ କରି ଅନୁତାପ ମଧ୍ୟ କଲା । ସେ ସତ କଥା ମାନି ଯିବାରୁ ଓ ଅନୁତାପ କରିବାରୁ ଶିକ୍ଷକ ତାକୁ କ୍ଷମା କରିଦେଲେ ଏବଂ ଭଲ ବୁଦ୍ଧି କରି ଭଲ ପାଠ ପଢ଼ିବାକୁ ଉପଦେଶ ବି ଦେଲେ ।

ସୁବାସ ସନ୍ଦେହ କରି ବିନୟକୁ ମାଡ଼ ମାରିଥିବାରୁ କ୍ଷମା ମାଗିନେଲା ଓ କୁଣ୍ଢାଇ ପକାଇଲା । ଉଭୟେ ଜାଣିଗଲେ ସନ୍ଦେହ ହେଉଛି ମଣିଷର ବଡ଼ ଶତ୍ରୁ । ତା'ପରଠାରୁ ସୁବାସ ଓ ବିନୟ ଭିତରେ ବନ୍ଧୁତା ଆହୁରି ବଢ଼ିଗଲା । ସେମାନେ ମିଶି ପାଠ ପଢ଼ିବାରେ ଅମରକୁ ସାହାଯ୍ୟ କଲେ । ସେ ମଧ୍ୟ ଭଲ ପଢ଼ିବାକୁ ଲାଗିଲା । ସମସ୍ତଙ୍କ ଆଦରର ପାତ୍ର ହୋଇ ପାରିଲା ।

ମଣିସାହି, ମାଧବନଗର, ଭଦ୍ରକ- ୭୫୬୧୮୧

---



ସ୍କୁଲରୁ ବାଳକ କାନ୍ଦି କାନ୍ଦି ଘରକୁ ଫେରିଲ
ମା- କାନ୍ଦୁଛୁ କ'ଣ ପାଇଁ ?
ପୁଅ- ସାର୍ ମୋତେ ମାରିଲେ ।
ମା- ଶିକ୍ଷକ ତତେ କ'ଣ ପାଇଁ ମାରିଲେ ?
ପୁଅ- ମୁଁ ଶିକ୍ଷକଙ୍କୁ 'କୁକୁଡ଼ା' କହିଲି ବୋଲି ।
ମା- ଆରେ ! ତୁ ଶିକ୍ଷକଙ୍କୁ କ'ଣ ପାଇଁ ଏମିତି କହିଲୁ ?
ପୁଅ- ଶିକ୍ଷକ ସବୁ ପରୀକ୍ଷାଖାତାରେ ମୋତେ ପରା ଅଣ୍ଡା ଦିଅନ୍ତି !

**--ରଶ୍ମି ସାହୁ, ନୂଆଦିଲ୍ଲୀ**

# ବଣ କୁକୁଡ଼ା ଉଡ଼ା ଶିଖିଲେ

ଡକ୍ଟର କୃତ୍ତିବାସ ନାୟକ

ଗୋଟିଏ ଛୋଟିଆ ପାହାଡ଼ । ପାହାଡ଼ ତଳକୁ ଲମ୍ବିଯାଇଛି ଜଙ୍ଗଲ । ସେଇ ଜଙ୍ଗଲରେ କେତେ ପଶୁ-ପକ୍ଷୀ ରହନ୍ତି । ଗୁମ୍ଫାରେ ଭାଘ, ଭାଲୁ, ସିଂହମାନେ ବିଶ୍ରାମ ନିଅନ୍ତି । ବୁଦାମୂଳେ ବିଲୁଆ, ଗଧିଆ, ହରିଣ, ଠେକୁଆ, ଓଧ ଓ ନେଉଳ ପରି ଜୀବମାନେ ଲୁଚି ରହନ୍ତି । ଚଢ଼େଇମାନେ ତ ମଜାରେ ଗଛ ଉପରେ ବସା ବାନ୍ଧି ରହନ୍ତି; କିନ୍ତୁ ବଣ କୁକୁଡ଼ାଟି ଭାରି ହଇରାଣ ହୁଏ ।

ସେ ଟିକେ ମୋଟା ହୋଇଥିବାରୁ ଭଲ କରି ଉଡ଼ି ପାରେନାହିଁ କି ଗଛ ଉପରେ ବସା ବାନ୍ଧି ରହି ପାରେନାହିଁ ।



ଏଣେ ବୁଦା ମୂଳେ ତ ବିଲୁଆ, ଗଧିଆ, ବଣବିରାଡ଼ି ଲୁଚି ରହନ୍ତି । ସେ କେମିତି କେଉଁଠି ନିରାପଦରେ ବସା ବାନ୍ଧି ଅଣ୍ଡା ଦବ ? ସମସ୍ତେ ତ ତାକୁ ଖାଇବାକୁ ଜଗିଛନ୍ତି । ସେ କାହାରି କିଛି କ୍ଷତି କରେନାହିଁ ସିନା, କିନ୍ତୁ ସମସ୍ତେ ତାର ଶତ୍ରୁ । ତେଣୁ ସେ ଗହଳିଆ ଲଟା ଭିତରେ ଉଚ୍ଚ ଜାଗା ଦେଖି ବସା ବାନ୍ଧି ସେଥିରେ ଅଣ୍ଡା ଦେଇଥିଲା ।

ସେଥିରୁ ଛୁଆ ଫୁଟି ଚିଁ ଚାଁ କଲେ । ବଣବିରାଡ଼ି, କଟାସଙ୍କ କାନରେ ସେ ଶବ୍ଦ ଶୁଣାଗଲା । ଦିନେ କଟାସ ଶୁଂଘି ଶୁଂଘି ଆସି ଗୋଟିଏ ଛୁଆକୁ ନେଇ ଖାଇଦେଲା । ତା' ପରଦିନ ବିଲୁଆଟା ଆସି ଆଉ ଦୁଇଟା ଛୁଆଙ୍କୁ ନେଇ ଚାଲିଗଲା । ବିଚାରୀ କୁକୁଡ଼ା ତା'ର ଅନ୍ୟ ଛୁଆମାନଙ୍କୁ କେମିତି କେଉଁଠି ନିରାପଦରେ ରଖିବ, ସେଇ ଚିନ୍ତାରେ ବସି ବହୁତ କାନ୍ଦିଲା ।



ତା'ର କାନ୍ଦ ଶୁଣି କାଉଟିଏ ଆସି ତା'ପାଖରେ ପହଞ୍ଚିଲା । ତା' ଦୁଃଖ କଥା ଶୁଣି ଆଃ ଚୁ ଚୁ କଲା । ଏଣେ କୁକୁଡ଼ାଛୁଆଙ୍କୁ ଦେଖି ତା'ପାଟିରୁ ଲାଳ ବୋହିଲା । କେଡ଼େ ଛନଛନିଆ ହୋଇଛନ୍ତି ମ ! ନରମ ନରମ ମାଂସକୁ ଚିରି, ଫାଡ଼ି ଖାଇବାକୁ ଭାରି ମଜା ଲାଗିଲା । ସେ ଆଗରୁ ଜାଣିଛି, ମାଆ କୁକୁଡ଼ାଟା ଭାରି ରାଗି । ତା' ନଖ ଓ ପଞ୍ଝା ଭାରି ଟାଣ । ତା'ପାଖରୁ ଛୁଆଙ୍କୁ ଛଡ଼େଇନେବା ଏତେ ସହଜ ନୁହେଁ । ତେଣୁ ସେ କପଟ କରି କହିଲା, "କୁକୁଡ଼ା ନାନୀ ! ଏ ଜାଗାଟା ତୋ ପାଇଁ ମୋଟେ ନିରାପଦ ନୁହେଁ । କଟାସ, ବିଲୁଆଙ୍କୁ ମୋଟେ ବିଶ୍ୱାସ ନାହିଁ । ସେମାନେ ଦୟାମାୟା ବୋଲି କିଛି ଜାଣନ୍ତି ନାହିଁ । ତୋ ଦୁଃଖ କଥା ଶୁଣି ଆଉ ତୋ ଛୁଆମାନଙ୍କୁ ଦେଖି ମୁଁ ଆଉ ସହିପାରୁନାହିଁ ।

ମୁଁ ଗୋଟିଏ ନିରାପଦ ଜାଗା ଦେଖିଛି । ତତେ ଦେଖେଇଦେବି । ସେଇଠି ତୋ ଛୁଆମାନେ ନିରାପଦରେ ରହିପାରିବେ । ସେ ଜାଗାକୁ ବିଲୁଆ କି କଟାସ କେହି ଯାଇପାରିବେ ନାହିଁ । କିନ୍ତୁ ଗୋଟିଏ କଥା ସେଥିପାଇଁ ମୋତେ ଗୋଟାଏ ଛୁଆ ଆଗ ଖାଇବାକୁ ଦେବୁ ତ ?"

କାଉର କପଟ କଥା ଆଉ ଛୁଆ ଖାଇବାର କୌଶଳ କଥା ଜାଣିପାରି ମାଆ କୁକୁଡ଼ା ତା'ର ଆଖିକୁ ଲାଲ୍ କରି କହିଲା, "ଆରେ କପଟିଆ କାଉ ! ତୁ ହେଉଛୁ ପକ୍ଷୀ ଜାତିର କଳଙ୍କ । ମିଛୁଆ, ଅଇଁଠାଖିଆ ଠକ । ସେଇଥିପାଇଁ ପରା ଭଗବାନ ତୋତେ ଏମିତି ଅସୁନ୍ଦର କରି ଗଢ଼ିଛନ୍ତି । ତୋର ଗୁଣକୁ ଦେଖି ତୋର ଗଳା କର୍କଶ ହୋଇଛି । ପକ୍ଷୀମାନଙ୍କ ଅଣ୍ଡା ଖାଇଯାଉ ବୋଲି ତତେ ସମସ୍ତେ କାମୁଡ଼ି ଗୋଡ଼ାନ୍ତି । ଆସିଛୁ ମୋତେ ସାହାଯ୍ୟ କରିବାକୁ ନା ଛୁଆ ଖାଇବାକୁ ? ମୁଁ ମରିଗଲେ ମରିଯିବି ସିନା ମୋ ଛୁଆକୁ ତୋତେ ଦେବିନାହିଁ । ଯା' ଶୀଘ୍ର ଏଠୁ ପଳା । ନ ହେଲେ ମୋ ପଞ୍ଝାରେ ତୋ ଅବସ୍ଥା କ'ଣ କରିବି, ତୁ ଜାଣିପାରିବୁ ନାହିଁ । ଦେଖିବୁ ନା ଏଠୁ ଯିବୁ ?''

ଚତୁର କାଉର କପଟ ବୁଦ୍ଧି କୁକୁଡ଼ା ପାଖରେ ମୋଟେ କାମ ଦେଲାନାହିଁ । ସେ ତା'ର ନାଲି ଆଖିକୁ ଦେଖି ଡରିଗଲା । ଭୟରେ ସେଠୁ ଉଡ଼ି ବହୁଦୂରକୁ ପଳାଇଲା ।

ସେଇ ଗଛଡାଳରେ ବସିଥିଲା ଚୁଇଁ ଚଢ଼େଇଟି କୁକୁଡ଼ା ମାଆର ଦୁଃଖ କଥା ଶୁଣିଥିଲା । ସେ ତା'ପାଖକୁ ଆସି କହିଲା, "ନାନୀ ! ଆମ ପକ୍ଷୀକୁଳରେ ବହୁତ ଦୁଷ୍ଟ, ବଦମାସ ଅଛନ୍ତି । ଚିଲକୁ ତ ଆମର ପ୍ରାଣେ ଭୟ । କାଉଟା ସବୁଠାରୁ ବଦମାସ୍ । ସେ ପରା ମୋ ବସାକୁ ଭାଙ୍ଗିଦେଇ ଯାଇଛି । ତା' କଥାକୁ ବିଶ୍ୱାସ ନ କରି ତୁ ଭଲ କରିଛୁ । ମିଛୁଆ ଠକମାନେ ବିପଦବେଳେ ସାହାଯ୍ୟ କରିବା ଆଳରେ




ପାଖକୁ ଆସି ସର୍ବନାଶ କରନ୍ତି । ଯଦି କାହାର ଆଶ୍ରା ନେବାକୁ ପଡ଼ିବ ତ ଆମେ ବଡ଼ପକ୍ଷୀ କିମ୍ବା ବୁଦ୍ଧିମାନ୍ ପକ୍ଷୀ ପାଖକୁ ଯିବା । ଆମ ପକ୍ଷୀମାନଙ୍କ ଭିତରେ ରଜା ହେଉଛି ମୟୂର । ସେ ସବୁଠାରୁ ଉଚ୍ଚ ଗଛ ଅଗରେ ବସିଥାଏ । ଚାଲ୍ ତା' ପାଖକୁ ଯାଇ ତୋ'ର ଦୁଃଖ ଜଣାଇବା । ସେ ନିଶ୍ଚୟ ଆମକୁ ଭଲ ଉପାୟ ବତାଇଦେବ ।"

ଚୁଇଁ ଚଢ଼େଇ କଥା ଶୁଣି କୁକୁଡ଼ା ମନରେ ମୟୂର ପ୍ରତି ଭରସା ଆସିଲା । ସେ ମୟୂର ପାଖରେ ତା'ର ଦୁଃଖ ଜଣାଇଲା । ତା' ଛୁଆମାନେ କେମିତି ନିରାପଦରେ ବଞ୍ଚିପାରିବେ, ତା'ର ଉପାୟ ବତାଇଦେ କଲା ।




ମୟୂର ରାଜା ସବୁକଥା ଶୁଣି କହିଲା "ଏଇ ଗୋଟାଏ କଥା । ନିର୍ବୋଧ ଆଉ ଅଳସୁଆମାନେ ସବୁଠି ହଇରାଣ ହେଇ କଷ୍ଟ ପାଆନ୍ତି । ଏଇ ସଂସାରରେ ଏମିତି କୌଣସି ଜାଗା ନାହିଁ, ଯେଉଁଠି ବଦମାସ, ଦୁଷ୍ଟ ଜୀବ ନ ଥିବେ । ସବୁଠି ଶତ୍ରୁ ଲୁଚି ରହିଛନ୍ତି । ଆମକୁ ସତର୍କ ହୋଇ ନିଜ ବୁଦ୍ଧି ବଳରେ ବଞ୍ଚି ରହିବାକୁ ପଡ଼ିବ । ତୁମମାନଙ୍କର

ଡେଣା ଅଛି, ପକ୍ଷୀ ଅଛି ସତ; କିନ୍ତୁ ତୁମେ ଅନ୍ୟମାନଙ୍କ ପରି ଉପରକୁ ଉଡ଼ିବାକୁ ଇଚ୍ଛା କରୁନା । ତେଣୁ ହିଂସ୍ର ପଶୁମାନେ ତମକୁ ଗୋଡ଼େଇ ଗୋଡ଼େଇ ଧରି ପକାନ୍ତି । ତେଣୁ ତୁମକୁ ବଞ୍ଚିବାର କୌଶଳ ଶିଖିବାକୁ ପଡ଼ିବ ।

ଏବେଠାରୁ ଛୁଆମାନଙ୍କୁ ଅଧିକ ପରିଶ୍ରମ କରିବାର କୌଶଳ ଶିଖାଇବୁ । ସେମାନେ ଯେମିତି ଅଧିକ ମୋଟା ଆଉ ଅଳସୁଆ ନ ହୁଅନ୍ତି ଦେଖିବୁ । ସେମାନେ ଫୁର୍ତ୍ତି ହେଲେ ଦ୍ରୁତ ଗତିରେ ଦୌଡ଼ିବେ । ବହୁତ ଉପରକୁ ଉଡ଼ିଯାଇ ଆତ୍ମରକ୍ଷା କରିପାରିବେ । ତୋ ଛୁଆମାନଙ୍କୁ କହିଦେବୁ, ସେମାନେ ସମସ୍ତଙ୍କୁ ବିଶ୍ୱାସ କରିବେ ସତ, କିନ୍ତୁ କାହାରିକୁ ଅତି ବିଶ୍ୱାସ କରିବେ ନାହିଁ । ସତର୍କ ରହିଲେ ବିପଦରୁ ଖସି ଯାଇ ହୁଏ । କାହାରିକୁ ଭୟ କରି ଘର ଛାଡ଼ି ଚାଲିଗଲେ ସମସ୍ୟାର ସମାଧାନ ହୁଏନାହିଁ । ସବୁ ପ୍ରତିକୂଳ ପରିସ୍ଥିତିରେ ଆମକୁ ଚଳିବାକୁ ପଡ଼ିବ ।"

ମୟୂର ରଜାର କଥାପଦକ କୁକୁଡ଼ା ମନକୁ ପାଇଲା । ସେ ବସାକୁ ଫେରିଯାଇ ତା' ଛୁଆମାନଙ୍କୁ ସବୁ କଥା କହିଦେଲା । ସେହିଦିନଠାରୁ କୁକଡ଼ାମାନେ ଜୋର୍‌ରେ ଉପରକୁ ଉଡ଼ିବା ବି ଶିଖିଲେ । ଏବେ ବିଲୁଆ କି କଟାସ ତାଙ୍କୁ କେହି ଧରି ପାରୁନାହାନ୍ତି । ଚୁଇଁ ଚଢ଼େଇ ସବୁଦିନ ତାଙ୍କୁ ଦେଖି ଖୁସି ହୁଏ ।

ଭି.ଆଇ.ଏମ୍-୫୫, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧

ଅଛି ନାହିଁର ଉତ୍ତର– ୧) କାନ ଭିତରେ ଗୋଟେ ଗାର ନାହିଁ, ୨) ଆଖି ପୂରା ବନ୍ଦ ଅଛି, ୩) ମୁହଁରେ ଓଠର ଗାର ନାହିଁ, ୪) ବେକ ରୁମାଲରେ ଗୋଟେ ଗୋଲ୍ ନାହିଁ, ୫) ରୁମାଲଟି ଅସମାନ ଅଟେ, ୬) ପେଟ କଡ଼ରେ ଥିବା ଗାର ଗୋଟେ ନାହିଁ, ୭) ଲାଞ୍ଜରେ ଗୋଟେ ଗୋଲ୍ ନାହିଁ, ୮) ଗୋଡ଼ର ବୁଢ଼ା ଆଙ୍ଗୁଠିରେ ନଖ ନାହିଁ ।

# ସାହିତ୍ୟଜ୍ଞାନ ପରୀକ୍ଷା

ଶ୍ରୀ ସୌମ୍ୟରଂଜନ ମହାପାତ୍ର

୧ । 'ଆହେ ଦୟାମୟ ବିଶ୍ୱବିହାରୀ, ଘେନ ଦୟାବହି ମୋର ଗୁହାରୀ' –ଉକ୍ତ ଉଦ୍ଧୃତାଂଶଟିର ରଚୟିତା କିଏ ?

୨ । 'ମାଟିମଟାଳ' ଉପନ୍ୟାସର ଲେଖକଙ୍କ ନାମ କ'ଣ ?

୩ । 'ଦାଣ୍ଡି ରାମାୟଣ' କିଏ ରଚନା କରିଥିଲେ ?

୪ । କବି ବୈଷ୍ଣବ ପାଣିଙ୍କର ବାଲ୍ୟ ନାମ କ'ଣ ଥିଲା ?

୫ । କେଉଁ ସଂଗୀତଜ୍ଞ 'ବାଣୀକଣ୍ଠ' ବୋଲି ସର୍ବତ୍ର ପରିଚିତ ?

୬ । ପ୍ରଥମ ଓଡ଼ିଆ ନାଟକର ନାମ କ'ଣ ?

୭ । 'ଭକ୍ତି ଭାଗବତ' କିଏ ରଚନା କରିଥିଲେ ?

୮ । 'ତ୍ରିକାଣ୍ଡକୋଷ' ସଂସ୍କୃତ ଅଭିଧାନ କିଏ ପ୍ରଣୟନ କରିଥିଲେ ?

୯ । 'ଓମର ଖୟାମ୍'କାବ୍ୟକୁ କିଏ ଓଡ଼ିଆରେ ଅନୁବାଦ କରିଛନ୍ତି ?

୧୦ । 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ର ରଚୟିତାଙ୍କ ନାମ କ'ଣ ?

ନୂଆଗାଁ, ବାଲିସାହି, ନରସିଂହପୁର, କଟକ

(ଉତ୍ତର ୩୬ ପୃଷ୍ଠାରେ)

# ଓଡ଼ିଶା ସାହିତ୍ୟ ଏକାଡେମୀ

## ସଂସ୍କୃତି ଭବନ, ଭୁବନେଶ୍ୱର

## ସଦ୍ୟ ପ୍ରକାଶ ପାଇ ବିକ୍ରି ଚାଲିଛି

**ସାଇତି ରଖିବା ଭଳି ଏକାଡେମୀର କେତେକ ଅନବଦ୍ୟ ପୁସ୍ତକ ସମ୍ଭାର**

| | | | |
|---|---|---|---|
| ୧. | କବି ତ୍ରିପୁରାରି ତ୍ରିପାଠୀ | ଡକ୍ଟର ସୁବାସ ଚନ୍ଦ୍ର ମିଶ୍ର | ଟ. ୧୦୦.୦୦ |
| ୨. | ପଣ୍ଡିତ ରଘୁନାଥ ମୁର୍ମୁ | ଡକ୍ଟର ରାଜକିଶୋର ନାୟକ | ଟ. ୬୦.୦୦ |
| ୩. | ପଲ୍ଲୀକବି କୃଷ୍ଣପ୍ରସାଦ ବେହେରା | ଡକ୍ଟର ମନ୍ମଥ କୁମାର ପ୍ରଧାନ | ଟ. ୧୦୦.୦୦ |
| ୪. | ସାରସ୍ୱତ ସାଧକ ପ୍ରାଣକୃଷ୍ଣ ସାମଲ | ଶ୍ରୀ ବିକ୍ରମ କେଶରୀ ବର୍ମା | ଟ. ୫୦.୦୦ |
| ୫. | ସାରସ୍ୱତ ସାଧକ ନୀଳମାଧବ ପାଣିଗ୍ରାହୀ | ଡକ୍ଟର ବୀଣାପାଣି ପ୍ରଧାନ | ଟ. ୧୦୦.୦୦ |
| ୬. | ପହଲିର ଗହଲି | ଦାଶ ବେନହୁର | ଟ. ୫୦.୦୦ |
| ୭. | ଓଡ଼ିଶାର ଲୋକକ୍ରୀଡ଼ା | ଡକ୍ଟର ସଞ୍ଜୟ କୁମାର ବାଗ୍ | ଟ. ୧୫୦.୦୦ |
| ୮. | ଘୋଡ଼ାନାଚ | ଡକ୍ଟର ଲକ୍ଷ୍ମୀକାନ୍ତ ତ୍ରିପାଠୀ | ଟ. ୧୨୦.୦୦ |
| ୯. | ମହିମଣ୍ଡଳର ଗୀତା | ସଂ : ଡକ୍ଟର ବିଜୟାନନ୍ଦ ସିଂହ | ଟ. ୨୫୦.୦୦ |
| ୧୦. | ପୂର୍ଣ୍ଣାନନ୍ଦ ଦାନୀଙ୍କ ନିର୍ବାଚିତ ଗଳ୍ପ ସଂକଳନ | ସଂ: ଡକ୍ଟର ପ୍ରଦୀପ କୁମାର ପଣ୍ଡା | ଟ. ୩୦୦.୦୦ |
| ୧୧. | ମଣିଷର ମହାକବି ସଚ୍ଚି ରାଉତରାୟ | ସଂ: ଡକ୍ଟର ହୃଷିକେଶ ମଲ୍ଲିକ<br>ଡକ୍ଟର ପ୍ରସନ୍ନ କୁମାର ମହାନ୍ତି | ଟ. ୨୦୦.୦୦ |
| ୧୨. | ଓଡ଼ିଆ ବ୍ୟଙ୍ଗ ଗଳ୍ପ | ସଂ: ଡକ୍ଟର ଲକ୍ଷ୍ମୀକାନ୍ତ ତ୍ରିପାଠୀ<br>ଡକ୍ଟର ମୃଣାଳ ଚାଟାର୍ଜୀ | ଟ. ୩୦୦.୦୦ |
| ୧୩. | ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟ (ପୁନଃମୁଦ୍ରଣ) | ସଂ: ଓଡ଼ିଶା ସାହିତ୍ୟ ଏକାଡେମୀ | ଟ. ୧୨୦.୦୦ |
| ୧୪. | ସମ୍ବଲପୁରୀ ଓଡ଼ିଆ ଶବ୍ଦକୋଷ (ପୁନଃମୁଦ୍ରଣ) | ଡକ୍ଟର ପ୍ରଫୁଲ୍ଲ କୁମାର ତ୍ରିପାଠୀ | ଟ. ୪୫୦.୦୦ |
| ୧୫. | ଶ୍ରୀଜଗନ୍ନାଥ(ପୁନଃମୁଦ୍ରଣ) | ଓଡ଼ିଆ ସାହିତ୍ୟ ଏକାଡେମୀ | ଟ.୧୫୦.୦୦ |
| ୧୬. | ଭାରତର ପ୍ରଥମ ଗଣବିପ୍ଳବ (ପୁନଃମୁଦ୍ରଣ) | ଡକ୍ଟର ଲକ୍ଷ୍ମୀନାରାୟଣ ରାୟସିଂହ | ଟ. ୧୦୦.୦୦ |
| ୧୭. | ସନ୍ଥ ଭକ୍ତି ସାହିତ୍ୟ (ପୁନଃମୁଦ୍ରଣ) | ଶ୍ରୀ ଚିତ୍ତରଂଜନ ଦାସ | ଟ. ୩୦୦.୦୦ |
| ୧୮. | ମେଘଦୂତମ୍ (ପୁନଃମୁଦ୍ରଣ) | ଅ: ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର | ଟ. ୧୦୦.୦୦ |
| ୧୯. | ଭାତ (ହିନ୍ଦୀ) | ଅ: ଡକ୍ଟର ଶଙ୍କରଲାଲ ପୁରୋହିତ | ଟ. ୭୫.୦୦ |
| 20. | Subaltern Voice<br>Bhima Bhoi : Poet of the People | Prof. Pabitra Mohan Nayak | Rs. 120.00 |
| 21. | A Journey Through Time | Tr: Dr. Sangram Jena<br>Dr. Aurobindo Behera | Rs. 100.00 |

**ସ୍ୱତନ୍ତ୍ର ରିହାତି**

୫୦୦ ଟଙ୍କା ପର୍ଯ୍ୟନ୍ତ ମୂଲ୍ୟର ପୁସ୍ତକ ପାଇଁ - ୨୦%
୫୦୧ ଟଙ୍କାରୁ ୨୦୦୦ ଟଙ୍କା ମୂଲ୍ୟର ପୁସ୍ତକ ପାଇଁ - ୩୦%
୨୦୦୧ ଟଙ୍କାରୁ ଊର୍ଦ୍ଧ୍ୱ ମୂଲ୍ୟର ପୁସ୍ତକ ପାଇଁ - ୪୦%

**ଶ୍ରୀ ହରିହର ମିଶ୍ର**
ସଭାପତି

**ଶ୍ରୀମତୀ ଗାୟତ୍ରୀ ସରାଫ**
ଉପସଭାପତି

**ଶ୍ରୀ ଅଶ୍ୱିନୀ କୁମାର ମିଶ୍ର**
ସଚିବ

# କଜ୍ଜଳୀ ରଖିଲା ମାନ

ଶ୍ରୀ ଶ୍ରୀନିବାସ ଖଟୁଆ

କନ୍ଧଗଡ଼ ରାଜ୍ୟରେ ଗୋଟିଏ ଜମିଦାର ପରିବାର ରହୁଥିଲେ । ସେହି ପରିବାରର ତିନିଭାଇ ଥିଲେ ଖୁବ୍ ଧନୀ ଓ ଚତୁର । ବଡ଼ଭାଇ ପ୍ରିୟସୁନ୍ଦର ସିଂହ ରାଜାଙ୍କ ବିଜୁଳିବିଭାଗରେ ଚାକିରି କରୁଥିବାରୁ ପ୍ରତିମାସରେ ଦରମା ଆକାରରେ ପାଉଥିଲେ ପାଞ୍ଚଶହ ଟଂକା । ଏହାକୁ ନେଇ ସେ ଭାଇମାନଙ୍କର ସହ ସୁରୁଖୁରୁରେ ଚଳିଯାଉଥିଲେ । ଏପରିକି ବଳକା ଟଂକାରେ ସୁନ୍ଦର କରି ଗଢ଼ି ତୋଳି ଥିଲେ ନିଜ ନିଜର ଘରକୁ ।

ହେଲେ ଏହି ତିନିଭାଇଙ୍କ ମଧ୍ୟରେ ମଝିଆ ଭାଇ ସତ୍ୟସୁନ୍ଦର ଥିଲା ସବୁଠାରୁ ସ୍ୱାର୍ଥପର । ସେ ପରିବାର ମଧ୍ୟରେ ମଝିରେ ମଝିରେ କଳିଝଗଡ଼ା କରୁଥିଲା ଓ ବଡ଼ଭାଇଙ୍କ ସମ୍ପତ୍ତି ଖାଇବା ଲୋଭରେ ସାନଭାଇ ସୌନ୍ଦର୍ଯ୍ୟସୁନ୍ଦରକୁ ହଇରାଣ ହରକତ କରୁଥିଲା । ସାନଭାଇ କିପରି ଅଲଗା ହୋଇ ରହିବ, ସେଥିପାଇଁ ବଡ଼ଭାଇଙ୍କୁ କୁଶିକ୍ଷା ଦେବାକୁ ପଛାଉ ନ ଥିଲା ମଧ୍ୟ ।

ଏହା ଦେଖି ସୌନ୍ଦର୍ଯ୍ୟସୁନ୍ଦର ଆଦୌ ସହିପାରିଲା ନାହିଁ । ଅଲଗା ହୋଇ ରହିବାକୁ ସେ ଉଚିତ ମନେକଲା । ସାନଭାଇ ଅଲଗା ହୋଇଯିବା ପରେ ସେ ବଡ଼ଭାଇଙ୍କ ଦରମା ଟଂକାକୁ ହାତେଇନେଇ ନିଜ ସ୍ତ୍ରୀ ପାଇଁ ସୁନାର ଗହଣା କିଣିବା ସଙ୍ଗେ ସଙ୍ଗେ ବଳକା ଟଂକାକୁ ନେଇ ବ୍ୟାଙ୍କ୍‌ରେ ସଞ୍ଚୟ କଲା । ଏ ସବୁ ଜାଣି ସୁଦ୍ଧା କିଛି କରି ପାରୁ ନ ଥିଲା ପ୍ରିୟସୁନ୍ଦର । କାରଣ ଗୋଟିଏ ବୋଲି ଝିଅ କଜ୍ଜଳୀର କିଛି ପିଲା ଛୁଆପିଲା ନ ଥିବାରୁ ତା' ମନରେ ରହିଥିଲା ଅନେକ ଦୁଃଖ । ସେ ସବୁବେଳେ ସେହି ଗୋଟିଏ କଥା ହିଁ ଭାବି ହେଉଥିଲା । ତେବେ କୁଶଳୀ ସତ୍ୟସୁନ୍ଦର ସବୁ ନିଜେ କରିଦେବ କହି ପ୍ରିୟସୁନ୍ଦରର ମନ ଭୁଲାଇ-ଦେଉଥିଲା । ଏମିତିକି ବେଳେବେଳେ ବୈଦ୍ୟଙ୍କଠାରୁ ମୋହିନୀ ମନ୍ତ୍ର ଆଣି ବଶ କରାଇଦେଉଥିଲା ସେ ।

କେତେବର୍ଷ ଗଲା ପରେ କଜ୍ଜଳୀର ଗୋଟିଏ ପୁଅ ଜନ୍ମ ହେଲା । ତେବେ ଏ କଥାକୁ ସତ୍ୟସୁନ୍ଦର ସହଜରେ ଗ୍ରହଣ କରିପାରିଲା ନାହିଁ । ସେ କିପରି ସମ୍ପତ୍ତି ଖାଇବ, ସେଥିପାଇଁ ବାଟ ଖୋଜି ଚାଲିଲା । ତେଣୁ ପ୍ରିୟସୁନ୍ଦର ଉପରେ ଆରମ୍ଭ କରିଦେଲା ଅତ୍ୟାଚାର । ଯଦ୍ଦ୍ୱାରା ପ୍ରିୟସୁନ୍ଦର ଦିନ କେତେଟାରେ ପାଗଳପ୍ରାୟ ହୋଇଗଲା । ଭଲମନ୍ଦ କିଛି ଜାଣିପାରିଲା ନାହିଁ । ଏ ଖବର କଜ୍ଜଳୀ ପାଖରେ ପହଞ୍ଚିବାରୁ ସେ ଆସି ହାଜର ହୋଇଗଲା ଏବଂ ବାପା କିପରି ଭଲ ହେବେ, ସେଥିଲାଗି ରାଜ୍ୟସାରା ବୁଲିବୁଲି ବୈଦ୍ୟମାନଙ୍କୁ ଦେଖାଇଲା, ହେଲେ କେହି ଭଲ କରିପାରିଲେ ନାହିଁ ।

ଦିନକର ଘଟଣା । କଜ୍ଜଳୀ ରାଜାଙ୍କ ପଦ୍ମପୋଖରୀରେ ଗାଧୋଉଥାଏ । ଏତିକିବେଳେ ଗୋଟିଏ ଅଦ୍ଭୁତ ଶବ୍ଦ ଶୁଣିଲା । ପାଣି ଭିତରୁ କେହି ଜଣେ କହୁଥିଲା, "କଜ୍ଜଳ ଲୋ କଜ୍ଜଳ ! ତୋ'ଲାଗି ତୋ ବଂଶ ଉଜ୍ଜ୍ୱଳ । ସେବା କରୁଥାଅ ମନଦେଇ ବାପାଙ୍କୁ ଯେବେ ପାଇବୁ ତୁହି ।" କଜ୍ଜଳୀ ଏଥର ତାଙ୍କ ସହ ତାଳ ଦେଇ କହିଲା, "ରାଇଜ ସାରା ବୁଲି ଆସିଲି ଭଲ ବଇଦ ପାଇଲି ନାହିଁ । ମୋ ବାପା କିପରି ଭଲ ହୋଇବେ କହି କି ପାରିବୁ ତୁହି ?"

ପାଣି ଭିତରୁ ଏଥର ଶୁଣାଗଲା, "ନେ ନେ ଏଇ ସୁନାମାଠିଆ, ଏଥିରେ ଅଛି ମୁଆଁ । ସେଇ ମୁଆଁକୁ



ଖୁଆଇଦେବୁ ତୋ ବାପା ହେବେ ଠିଆ।” ସତକୁ ସତ ଗୋଟିଏ ସୁନାମାଠିଆ ଭାସିଆସିଲା। କଜ୍ଜଳୀ ତାକୁ ଯତ୍ନରେ ନେଇ ସେଥିରୁ ମୁଆଁ ବାହାର କରି ବାପାଙ୍କୁ ଖୁଆଇଦେଲା। ଚାହୁଁ ଚାହୁଁ ସୂର୍ଯ୍ୟ ଅସ୍ତ ବେଳକୁ ପ୍ରିୟସୁନ୍ଦର ପୁଣି ଫେରିଆସିଲା ପୂର୍ବ ଅବସ୍ଥାକୁ।

ସତ୍ୟସୁନ୍ଦର ଏହା ଦେଖି ରାଗରେ ନିଆଁବାଣ। କ’ଣ କେଲେ ସ୍ୱାର୍ଥ ପୂରଣ ହୋଇପାରିବ, ସେଇ କଥା ଚିନ୍ତା କଲା। ତେଣୁ କାଳବିଳମ୍ବ ନ କରି ପ୍ରିୟସୁନ୍ଦର ଓ ତା’ର ନାତିନାତୁଣୀ ସମସ୍ତଙ୍କୁ ହଇରାଣ କଲା। କଜ୍ଜଳୀ କିଛି ବାଟ ନ ପାଇ ବାପାଙ୍କୁ ଦୂରଦେଶକୁ ନେଇଯିବ ବୋଲି ଭାବିଲା। କିନ୍ତୁ ସେଠି ତା’କୁ ସୁନ୍ଦର ଘରଟିଏ ମିଳିବ କି ନାହିଁ ସନ୍ଦେହ ରହିଲା ତା’ ମନରେ।

ଯୋଗକୁ ଏହି ସମୟରେ ତା’ର ବାପାଙ୍କର ପ୍ରିୟ ବନ୍ଧୁ ଅଭୟସୁରସେନଙ୍କ କଥା ମନେପଡ଼ିବାରୁ, ସେ ବନ୍ଧୁଙ୍କ ପାଖକୁ ଯାଇ ସବୁ କଥା କହିଲା। ସହଜେ ତ ଅଭୟସୁରସେନ ବଡ଼ ଉପକାରୀ, ତେଣୁ ସେ କହିଲେ, “ଆସ ବନ୍ଧୁ! ଆସ ମୋ ସାଥିରେ। ମୁଁ ତୁମକୁ ଗୋଟିଏ ନିରାପଦ ସ୍ଥାନକୁ ନେଇଯିବି। ତମେ ସେଠାରେ ଭଲରେ ରହିପାରିବ।” କଜ୍ଜଳୀ ବନ୍ଧୁଙ୍କ ପଛେ ପଛେ ଯାଇ ଦେଖେ ତ ଗୋଟିଏ ସୁନ୍ଦର ପାହାଡ଼। ପାହାଡ଼ ତଳେ ଗୋଟିଏ ଝଙ୍କାଳିଆ ବରଗଛ। ବରଗଛକୁ ପାଚେରୀ ପରି ବେଢ଼ି ରହିଛି ଶହଶହ ତାଳଗଛ। ସେହି ତାଳଗଛରେ ଅଛନ୍ତି କେତେ ଶାଗୁଣା, ଯେଉଁମାନେ କି ସୈନିକ ପରି ଜଗି ରହିଛନ୍ତି ବରଗଛକୁ। ତାରି ନିକଟରେ ଏକ ସୁନ୍ଦର ଘର ନିର୍ମାଣ କରିଛନ୍ତି ସୁରସେନ୍‌। କଜ୍ଜଳୀ ଏଥର ଖୁସି ହୋଇଗଲା। ସତ୍ୟସୁନ୍ଦର ଓ ତା’ର ପିଲାମାନେ ତାଙ୍କର ଆଉ କିଛି କରିପାରବେ ନାହିଁ ବୋଲି ଭାବିଲା। ସେହିଦିନଠାରୁ ସେ ଗଛ ତଳେ ସୁରସେନଙ୍କ ଦ୍ୱାରା ନିର୍ମିତ ଘରେ ଆରାମରେ ରହିଲା ବାପା ଓ ପିଲାଛୁଆଙ୍କୁ ନେଇ।

ଏପଟେ ସତ୍ୟସୁନ୍ଦର ବଡ଼ଭାଇଙ୍କୁ ତଡ଼ିଦେବା ପରେ ଖୁସିରେ ରହିପାରିଲା ନାହିଁ। ତାକୁ ପିଲାମାନେ ଘରୁ ତଡ଼ିଦେଲେ। ବିଚରା ଭୋକଉପାସରେ ଦିନକୁ ଦିନ ଦୁର୍ବଳ ହୋଇଗଲା। କି ରୋଗ ହେଲା ଯେ ଦେହମୁଣ୍ଡ ବଙ୍କା ହୋଇଗଲା। ଏ କଥା କଜ୍ଜଳୀ କାନରେ ପଡ଼ିବାରୁ ସେ ଆଉ ଥୟ ହୋଇ ରହିପାରିଲା ନାହିଁ। ଶତ୍ରୁ ହେଉ ପଛେ ବାପାଙ୍କ ଭାଇ ତ!

ଏଇ ବିଚାରରେ କଜ୍ଜଳୀ ଦଳେ ଲୋକଙ୍କୁ ଧରି ଆସି ପହଞ୍ଚିଗଲା। ସେମାନେ ଗଛର ବକଳରେ ତିଆରି ହୋଇଥିବା ଗୋଟିଏ ସବାରିରେ ସତ୍ୟସୁନ୍ଦରକୁ ବସାଇ ପାହାଡ଼ ତଳର ସେଇ ବରଗଛ ପାଖକୁ ନେଇଗଲେ।



ଏତେ ସୁନ୍ଦର ଘର ଦେଖି ସତ୍ୟସୁନ୍ଦରର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଦିନେ ଯେଉଁ କଜ୍ଜଳୀକୁ ମାଡ଼ ମାରି ତଡ଼ିଦେଇଥିଲା, ସେଇ କଜ୍ଜଳୀର ସେବାଶୁଶ୍ରୂଷା ଯୋଗୁଁ ଆଜି ତା'ର ଜୀବନରକ୍ଷା ହୋଇପାରିଛି ଜାଣି ଲଜ୍ୟା ଅନୁଭବ କଲା ଏବଂ ନିଜକୁ ଧିକ୍କାର କଲା । ବଡ଼ଭାଇଙ୍କ ପ୍ରତି କୃତଜ୍ଞ ନ ହୋଇ କୃତଘ୍ନ ହୋଇଥିବାରୁ ଆପଣାକୁ ଦୋଷୀ ମନେ କରି ମୁହଁ ତଳକୁ କରି ରହିଲା ।

କନ୍ଧବେରେଣୀ, ଚମ୍ପେଶ୍ୱର, କଟକ- ୭୫୪୦୩୭

# ରାଜାଙ୍କ ଦାୟିତ୍ୱ

ଶ୍ରୀ ବଙ୍ଗାଳି ଚରଣ ଯତି

ହରିଣୀଟିଏ ଶୋକରେ ବ୍ୟତିବ୍ୟସ୍ତ ହୋଇ ପୋଖରୀ ଆଡ଼କୁ ଦୌଡ଼ିଯାଉଥିଲା । ସେତିକିବେଳେ ଜଣେ ରାଜା ତାକୁ ମାରିବାକୁ ଲକ୍ଷ୍ୟ କରିଥିବାର ଦେଖିବାକୁ ପାଇଲା । ହରିଣ ସାଙ୍ଗେ ସାଙ୍ଗେ ସେଇଠି ରହିଯାଇ କହିଲା, "ରାଜନ୍! ମୁଁ ମରିବା ପୂର୍ବରୁ ମୋର ଗୋଟିଏ ମିନତି ଶୁଣନ୍ତୁ । ମୁଁ ଆପଣଙ୍କ ଲକ୍ଷ୍ୟରେ ଅଛି । ଆପଣ ରାଜା, ମୁଁ ଆପଣଙ୍କର ପ୍ରଜା । ମୁଁ କେବଳ ଏତିକି ଚାହୁଁଛି ଯେ ପ୍ରଥମେ ମୋର ପିଲାମାନଙ୍କୁ ସ୍ୱାମୀଙ୍କ ଦାୟିତ୍ୱରେ ଦେଇଦେବି । ତା'ପରେ ଆପଣ ମୋର ଶିକାର କରିବେ ।" ରାଜା ତା'କୁ ଯିବାକୁ କହିଲେ । ହରିଣୀ ପାଣି ପିଇ ଘର ଆଡ଼କୁ ଗଲା ।



ଘରକୁ ଯାଇ ପିଲମାନଙ୍କୁ ଗେହ୍ଲା କଲା ଏବଂ ତା'ର ସ୍ୱାମୀ ହରିଣକୁ ସବୁ କଥା କହିଲା ।

ତା'ର ସ୍ୱାମୀ କହିଲା, "ତୋ' ବିନା ପିଲାଙ୍କ ଲାଳନପାଳନ ସମ୍ଭବ ହୋଇପାରିବ ନାହିଁ । ସେଥିପାଇଁ ତୁ ଏଠି ରହ, ତୋ' ଜାଗାରେ ମୁଁ ଯାଉଛି ।" ଏ କଥା ଶୁଣି ହରିଣୀ କହିଲା, "ନାଁ ସ୍ୱାମୀ ! ମୁଁ ପ୍ରତିଶ୍ରୁତି ଦେଇଛି । ମୁଁ ହିଁ ରାଜାଙ୍କ ପାଖକୁ ଫେରିଯିବି ।" ମା' ବାପାଙ୍କ କଥା ଶୁଣି ପିଲାମାନେ କହିଲେ, "ଆପଣ ଦୁହେଁ ଏଇଠି ରୁହନ୍ତୁ । ଆମେ ଆପଣଙ୍କ ଜାଗାରେ ଯାଉଛୁ ।" କୌଣସି ସିଦ୍ଧାନ୍ତ ନ ହୋଇପାରିବାରୁ ଚାରିଜଣଯାକ ରାଜାଙ୍କ ସମ୍ମୁଖରେ ପହଞ୍ଚିଲେ । ହରିଣ ରାଜାଙ୍କୁ ସମସ୍ତ ଘଟଣାକ୍ରମ ଶୁଣାଇଲା ।

ରାଜା ହରିଣୀ ଏବଂ ତା' ପରିବାରର ପ୍ରତିଶ୍ରୁତି ରକ୍ଷା କରିବାର ଗୌରବ ଦେଖି ଲଜ୍ଜିତ ହୋଇଗଲେ । ତାଙ୍କର ବୋଧ ହେଲା ଯେ ତାଙ୍କ ରାଜ୍ୟର ପଶୁପକ୍ଷୀ ମଧ୍ୟ ତାଙ୍କର ପ୍ରଜା, ସେଥିପାଇଁ ତାଙ୍କୁ ରକ୍ଷା କରିବାର ଦାୟିତ୍ୱ ମଧ୍ୟ ରାଜାଙ୍କର । ସେହି ଚାରିଜଣଙ୍କୁ ରାଜା ଛାଡ଼ିଦେଲେ ଏବଂ ଆଉ ହିଂସା ନ କରିବାର ସଂକଳ୍ପ ନେଲେ ।

ଗାୟତ୍ରୀ ପରିବାର,
ୱାର୍ଡ ନଂ- ୧୭, ବାରିପଦା- ୭୫୭୦୦୨, ମୟୂରଭଞ୍ଜ



## ସବୁକଥା ଭୁଲି

ଜୟନ୍ତିକା

ଭୁଲିଯିବାଠାରୁ ଭଲ କଥା ନାହିଁ ଜୀବନରେ
ଭଲପିଲାଟିଏ ଦୁଃଖକଥା ସବୁ ଭୁଲିପାରେ,
ଭୁଲିପାରେ କେବେ ଖାଇଥିଲା ଗାଳି କାହାଠାରୁ
ଅବା କିଏ ଦିନେ ମୋଡ଼ିଥିଲା କାନ ଚାହାଳିରେ ।

ଭୁଲିଯାଏ କେବେ ଖାଡ଼ା ଉପାସରେ ଥିଲା ରହି
ସହିନେଇଥିଲା ଜାଣତରେ କଟୁକଥା କା'ର,
ଭୁଲିଯାଏ କେବେ ଥିଲା କା'କଥାରେ ମୁହଁ ଚାପି
କେବେ ଅଜାଣତେ ନଇଁଯାଇଥିଲା ଆଖି ତା'ର ।

ସବୁକଥା ଭୁଲି ରଖିଥିଲା ମନେ ପଦେ କଥା
କହିଥିଲା ମାଆ ଆବେଗରେ ବୁଢ଼ି ତାକୁ ଦିନେ
'ଭଲଅଛି ଆଉ ମନ୍ଦକଥା ଅଛି ଜୀବନରେ
ଭଲପିଲାଟିଏ ଭଲ କଥା ରଖିଥାଏ ମନେ ।'

ମନେ ଅଛି ତା'ର ସାଙ୍ଗସାଥୀ ମେଳ ପରିବାର
ଗାଁ ନଈ ତୋଟା ଗହୀର ପଡ଼ିଆ ବିଲମାଳ,
ଭୁଲିଛି ସେସବୁ କଥା ଯାହା କେବେ ଅଜାଣତେ
ଭରିଥିଲା କୋହ ମନରେ, ଆଖିରେ ଲୁହଧାର ।

ଜେକେବିକେ କଲେଜ, କଟକ



## ସାଧାରଣ ଜ୍ଞାନ ପରୀକ୍ଷା

ଜ୍ୟୋତିରଂଜନ ବିଶ୍ୱାଳ

୧ । ୨୦୧୭ ମସିହା ବିଶ୍ୱ ପାଣିପାଗ ଦିବସର ପ୍ରସଙ୍ଗ (Theme) କ'ଣ ରଖାଯାଇଛି ?

୨ । କେଉଁ ରାଜ୍ୟ ସରକାର ଗତ ଫେବୃଆରୀ ୧୪ ତାରିଖରେ ପିତାମାତା ପୂଜନ ଦିବସ ପାଳନ କରିଛି ?

୩ । କେଉଁ ଦେଶ ୨୦୧୭ ଟି-୨୦ ଦୃଷ୍ଟି- ବାଧିତ ବିଶ୍ୱକପ୍‌ ବିଜୟୀ ହୋଇଛି ?

୪ । ଉତ୍ତରମାର୍ଗ ପୁସ୍ତକର ରଚୟିତା କିଏ ?

୫ । ସାଣ୍ଟିଆଗୋ କେଉଁ ଦେଶର ରାଜଧାନୀ ଅଟେ ?

୬ । ବାବା ରାମଦେବ କେଉଁ ମସିହାରେ ପତଞ୍ଜଳି ଯୋଗପୀଠ ନ୍ୟାସ ପ୍ରତିଷ୍ଠା କରିଥିଲେ ?

୭ । ଟ୍ରାଫିକ୍‌ ସିଗ୍‌ନାଲର ଉଦ୍ଭାବକଙ୍କ ନାମ କ'ଣ ?

୮ । କୋଚିନ୍‌ ସିପ୍‌ୟାର୍ଡରେ ନିର୍ମିତ ହୋଇଥିବା ପ୍ରଥମ ତୈଳ ଟ୍ୟାଙ୍କର୍‌ର ନାମ କ'ଣ ?

୯ । କେଉଁ ମସିହାରେ ପ୍ରଥମେ ଓସ୍କାର ପୁରସ୍କାର ପ୍ରଦାନ କରାଯାଇଥିଲା ?

୧୦ । କେଉଁ ଚଳଚ୍ଚିତ୍ରରେ ନାସିରୁଦ୍ଦିନ୍‌ ଶାହାଙ୍କ ସହିତ ସୁନୀଲ ଗାଭାସ୍କର ଅଭିନୟ କରିଥିଲେ ?

ଗ୍ରାମ/ପୋ - ଦୁର୍ଗାପୁର, ଭାୟା - ତାଳଚେର, ଜିଲ୍ଲା - ଅନୁଗୁଳ, ପିନ୍‌ - ୭୫୯୧୦୦

*(ଉତ୍ତର ୩୨ ପୃଷ୍ଠାରେ)*



# ମନିକା ମାଙ୍କଡ଼ିଆ

ଶ୍ରୀ ଶୁଭେଂଦ୍ର ମୋହନ ଶ୍ରୀଚଂଦନ ସିଂହ

ମାଙ୍କଡ଼ିଆ ଏକ ଯାଯାବର ଜାତି । ସେମାନଙ୍କର ନ ଥାଏ ଘର ନା ଜମିବାଡ଼ି । ପୁଣି ଗାଁ'ରୁ ଗାଁ, ବଣରୁ ବଣ ଘୂରିବୁଲନ୍ତି । ଏ ବାରବୁଲାମାନେ ନିହାତି ଗରିବ । ଇଂରାଜୀରେ ସେମାନଙ୍କୁ ମାରିଜିନାଲାଇଜଡ୍ (Marginalized) ଜାତି ବୋଲି କୁହାଯାଏ । ଆଧୁନିକ ସଭ୍ୟତାଠାରୁ ଅନେକ ଦୂରରେ ସେମାନେ ରହନ୍ତି । ଗାଁ, ସହର, ବସ୍ତି କ'ଣ ଜାଣନ୍ତିନି । ପତିତ, ଦଳିତ, ସମାଜରୁ ବହିଷ୍କୃତ, ପ୍ରତ୍ୟାଖ୍ୟାତ ।

ଏବେ ପରିସ୍ଥିତି ବଦଳିଛି । ଏମାନଙ୍କୁ ସମାଜର ମୁଖ୍ୟସ୍ରୋତକୁ ଆଣିବାକୁ ବିଭିନ୍ନ ସଂସ୍ଥା ଏବଂ ଏନ୍.ଜି.ଓ. କାମ କରୁଛନ୍ତି । ତେବେ ମନିକା ପରିବାର ରହନ୍ତି ମହ୍ଲାର ମାଙ୍କଡ଼ିଆ ବସ୍ତିରେ, ଯାଜପୁର ଜିଲା ରାନ୍‌ହାସାଲ୍ ପଂଚାୟତର ସୁକିନ୍ଦା ବ୍ଲକ୍‌ରେ ।

ଟିସ୍‌କୋ କଲୋନୀରେ ହାଇସ୍କୁଲଟିଏ ଚାଲୁଛି । ଶ୍ରମଶକ୍ତି ହାଇସ୍କୁଲ । ଓଡ଼ିଶା ସରକାର ଚଳାନ୍ତି । ସୁକିନ୍ଦା ଖଣି ଅଂଚଳ । ଶ୍ରମିକମାନଙ୍କ ପିଲାଙ୍କ ପାଇଁ ଏ ସ୍କୁଲ ।

ସେଇ ସ୍କୁଲର ଛାତ୍ରୀ ଥିଲେ ମନିକା । ଏ ବର୍ଷ ହାଇସ୍କୁଲ ପରୀକ୍ଷାରେ ସେ ସଫଳତାର ସହ ପାସ୍ କରିଛନ୍ତି । ଦୁଇ ଶହ ଅଠଷଠି ନମ୍ବର ପାଇଛନ୍ତି । ଏଥିରେ ସ୍କୁଲ୍ ଓ ସାରା ଅଂଚଳରେ ଖୁସି, ଆନନ୍ଦ, ବିସ୍ମୟର ଲହର ଖେଳିଯାଇଛି । କାରଣ ମାଙ୍କଡ଼ିଆ ପ୍ରତ୍ୟାଖ୍ୟାତ ଜାତିର ସେ ହେଉଛନ୍ତି ପ୍ରଥମ ମ୍ୟାଟ୍ରିକ୍ୟୁଲେଟ୍ ।

ସେମାନେ ଗୋଟିଏ ଯାହିତାହି ଘରେ ରହନ୍ତି । ପକ୍କାଘର ନୁହେଁ । ବିଜୁଳି ନାହିଁ । ଗଳି ରାସ୍ତାରେ ଯେଉଁ ଆଲୁଅ ଖୁଣ୍ଟି ଥାଏ, ତା' ତଳେ ରହି ମନିକା ପାଠ ପଢ଼ନ୍ତି । ମଶା, ଡାଉଁଶ, ଝଡ଼ିପୋକ ଅତ୍ୟାଚାର ସହନ୍ତି । ବର୍ଷାଭିଜା, ଶିଶିରସ୍ନାତ ରାତିକି ଖାତିରି କରିନାହାନ୍ତି । ସବୁ ବହିପତ୍ର ବି ନ ଥିଲା; ତଥାପି ସେ ପାଠରେ ନିଘା ରଖିଥିଲେ ଏବଂ ପରୀକ୍ଷାରେ ସଫଳ ବି ହେଲେ ।

ବାପା ରାମଦାସ, ମା' ସାବିତ୍ରୀ ଖୁବ୍ ଖୁସି । ସ୍କୁଲର ପ୍ରଧାନ ଶିକ୍ଷକ କ୍ଷେତ୍ରବାସୀ ବାରିକ ଓ ଜିଲ୍ଲାଶିକ୍ଷା ଅଧିକାରୀ କୃଷ୍ଣଚନ୍ଦ୍ର ନାୟକ ଆଶା କରନ୍ତି ଯେ ମନିକା ସମଗ୍ର ମାଙ୍କଡ଼ିଆ ଦଳିତ ସମ୍ପ୍ରଦାୟ ପାଇଁ ଗୋଟେ ଆଦର୍ଶର ପାଦ ଥାପି ଆଗକୁ ବଢ଼ିବେ । ଉଚ୍ଚଶିକ୍ଷା ପାଇଁ ନୂଆ ବାଟ ଦେଖାଇବେ । ଈଶ୍ୱର କରନ୍ତୁ– ଦଳିତ ଯାଯାବର ସମ୍ପ୍ରଦାୟର ଏ ମନିକାଙ୍କ ପଥ ଉଜ୍ଜ୍ୱଳ ହେଉ ଏବଂ ତାଙ୍କ ସମ୍ପ୍ରଦାୟ ଏକ ନୂଆ ପ୍ରେରଣା ପାଉ ।

ରେଢ଼ାଖୋଲ, ସମ୍ବଲପୁର-୭୬୮୧୦୬

# ଜାମ୍ବିମୁଣ୍ଡାର ସାହସିକତା

ଶ୍ରୀ ହଳଧର ପଣ୍ଡା

ପାହାଡ଼ ଉପରେ ଥିବା ନାଗାଡାହି ଗାଁରେ ଜାମ୍ବିମୁଣ୍ଡା ରହେ । ଗାଁ' ତ ନୁହେଁ, ଦଶପନ୍ଦରଟି ଘରର ଛୋଟ ବସ୍ତିଟିଏ । ଲୋକସଂଖ୍ୟା ପ୍ରାୟ ଶହେ ଜଣ ଭିତରେ । ନାଗାଡାହିକୁ ରାସ୍ତା ନାହିଁ । ପାହାଡ଼ର ଡଙ୍ଗରରେ ବୁଲି ବୁଲି ଗଲେ ସେଠାରେ ପହଞ୍ଚିହେବ । ବର୍ଷା ଦିନରେ ସେଠାକୁ ଯିବା ସାଧାରଣ ଲୋକଙ୍କ ପାଇଁ ସମ୍ଭବ ନୁହେଁ, କିନ୍ତୁ ନାଗାଡାହିର ଲୋକେ ସଉଦାପତ୍ର ବା ଲୁଗାପଟା ପାଇଁ ପାହାଡ଼ ତଳ ହାଟକୁ ଗଡ଼ନ୍ତି । ବାସ୍, ସେଇଥିରେ ତାଙ୍କର ଚଳିଯାଏ । ପାହାଡ଼ ଉପରେ ପୋଡୁଚାଷ କରି ସେମାନେ ମକା, କାନ୍ଦୁଲ, କନ୍ଦମୂଳ ଓ ଷଠିଆ ଧାନ ଅମଳ କରନ୍ତି ।

ଏବେ ସରକାର ନାଗାଡାହିର ଲୋକମାନଙ୍କ ପାଇଁ ଗୋଟିଏ ପ୍ରାଇମେରୀ ସ୍କୁଲ ବସାଇଛନ୍ତି । ସେଥିରେ ପନ୍ଦରଜଣ ପିଲା ପଢ଼ନ୍ତି । ବାରବର୍ଷର ବୟସ ଜାମ୍ବିମୁଣ୍ଡା ସେମାନଙ୍କ ମଧ୍ୟରୁ ଜଣେ । ଜାମ୍ବି ଓ ତା'ର ସାଙ୍ଗମାନେ ସେଇ ସ୍କୁଲକୁ ପ୍ରତିଦିନ ଯାଆନ୍ତି । ସେଇଠି ପଢ଼ନ୍ତି, ମଧ୍ୟାହ୍ନ ଭୋଜନ କରନ୍ତି ଓ ଖେଳକୁଦ କରନ୍ତି । ଯେଉଁଦିନ ଶିକ୍ଷକ ସ୍କୁଲକୁ ଆସନ୍ତି ନାହିଁ, ସେଦିନ ପିଲାମାନେ ଆପେ ଆପେ ପଢ଼ନ୍ତି ବା ଖେଳନ୍ତି ।

ସେଦିନ ନାଗାଡାହି ସ୍କୁଲକୁ ଶିକ୍ଷକ ଆସିଲେ ନାହିଁ । ସ୍କୁଲ ପାଖ ଖୋଲା ଜାଗାରେ ପିଲାମାନେ ପାଟିତୁଣ୍ଡ କରି, ଦୌଡ଼ାଦୌଡ଼ି କରି ଖେଳୁଥାଆନ୍ତି । ଖେଳିବା ପାଇଁ ସେଇ ଟିକକ ତ ଖୋଲାଜାଗା, ନଚେତ୍ ସେଇଠୁ ପାହାଡ଼ ସୀମା ଯାଏଁ ଲମ୍ବିଯାଇଛି ଘଞ୍ଚଜଙ୍ଗଲ ।

–ହଠାତ୍ କ'ଣ ହେଲା କି, ଗୋଟିଏ ବାଘ ଖେଳପଡ଼ିଆକୁ ଲାଗି ରହିଥିବା ବୁଦା ଭିତରୁ ଡିଆଁ ମାରି ଖେଳୁଥିବା ପିଲାମାନଙ୍କ ମଧ୍ୟରୁ ଗୁଲ୍‌କିକୁ କାମୁଡ଼ି ଧରି ନିମିଷକ ଭିତରେ ଉଭାନ୍ ହୋଇଗଲା । ପିଲାମାନେ ଏ ସବୁ ଦେଖି ଭୟରେ ଚିତ୍କାର କଲେ । କିଏ କେମିତି ଭୋ ଭୋ କାନ୍ଦି ପକାଇଲେ । ଗାଁ'ଲୋକଙ୍କୁ ଡାକ ପକାଇଲେ– ମାତ୍ର ଏ ଘଞ୍ଚବଣରେ ଡାକ ଶୁଣିବ କିଏ ?

ସେଇ ଛୋଟ ଗାଁ' ମୁଣ୍ଡରେ ତ ସ୍କୁଲ । ପୁଣି ଏହି ସମୟରେ ଗାଁ' ଲୋକ ଜଙ୍ଗଲକୁ ପିଡା ଆଳୁ ବା କନ୍ଦମୂଳ ଖୋଜିବାକୁ ଯାଇଥିବେ । ଡାକ ଶୁଭିଲେ ତ ଶୁଣିବେ !

ଏଣେ ବାଘ ଗୁଲ୍‌କିକୁ କାମୁଡ଼ିନେଇ ଗୋଟେ ବୁଦା ଭିତରେ ପଶିଥାଏ । ତା' ଗଳାକୁ ଜୋର୍‌ରେ କାମୁଡ଼ି ଧରିଥିବାରୁ ଗୁଲ୍‌କିର କାନ୍ଦଣା ବା ଚିତ୍କାର କିଛି ବାହାରକୁ ଶୁଭୁ ନ ଥାଏ । ଖାଲି ବାଘର ଗର୍ଜନ ଓ ଗୁଲ୍‌କିର ସୁଁ ସୁଁ ଶବ୍ଦ ପବନରେ ଭାସି ଭାସି ଜଣାଇଦେଉଥାଏ ଯେ ବାଘ ନିକଟସ୍ଥ ବୁଦାରେ ଛପିଛି ।



ଏ ସବୁ ଘଟଣା ଦେଖି ଜାମ୍ବିମୁଣ୍ଡା ମନରେ ସାହସ ବାନ୍ଧିଲା । ଯେତେହେଲେ ଗୁଲ୍‌କି ତା' କକାଝିଅ ଭଉଣୀ । ଗାଁ' ଲୋକ ନ ଆସିଲେ ବୋଲି ସେ ଗୁଲ୍‌କିକୁ ବାଘ ମୁହଁରେ ଛାଡ଼ି ଚାଲିଯିବ ! ସେ ସ୍କୁଲ ଘରକୁ ଆସିଲା । ଦେଖିଲା ପିଲାମାନେ ଖେଳିବେ ବୋଲି ଶିକ୍ଷକ ବାଘ ଓ ସିଂହର ମୁଖା କାନ୍ଥରେ ଟଙ୍ଗାଇଛନ୍ତି । ସେ ଗୋଟେ ବାଘମୁଖା ଖୋଲି ମୁହଁରେ ଲଗାଇଲା । ହାତରେ ଧରିଲା ସ୍କୁଲର ଘଣ୍ଟା ଓ ପିଟଣା ବାଡ଼ି । ନାଲି ଟେବୁଲ୍‌କ୍ଲଥ୍‌ଟା ଗୁଡ଼େଇ ହୋଇ ପଡ଼ି ଘଣ୍ଟା ପିଟି ପିଟି ସେ ବାଘ ଥିବା ବୁଦା ଆଡ଼କୁ ମୁହାଁଇଲା । ବାଘମୁଖା ପିନ୍ଧା ଜାମ୍ବିମୁଣ୍ଡାର ଏଭଳି ବିଚିତ୍ର ବେଶ ଓ ଘଣ୍ଟାବଜା ଦେଖି ବାଘ ତରକିଗଲା କି କ'ଣ, ଟିକେ ଘୁଞ୍ଚିଗଲା ବୁଦାରୁ । ଜାମ୍ବି ଆଖିରୁ ବାଘର ଏ ଡରକୁଳା ବ୍ୟବହାର ବାଦ୍ ଗଲାନାହିଁ । ସେ ଆହୁରି ସାହସର ସହିତ ଘଣ୍ଟା ବଜାଇ ବଜାଇ ଆଗକୁ ମାଡ଼ିଚାଲିଲା ।

ବାଘ ଏ ଦୃଶ୍ୟ ସହିତ ପରିଚିତ ନ ଥିଲା ।

ଜାମ୍ବିମୁଣ୍ଡାର ଚାଲାକି ସେ ବୁଝିପାରିଲା ନାହିଁ । ତେଣୁ ଭୟରେ ସେ ଏକାଡିଆଁକେ ଚମ୍ପଟ୍ ମାରିଲା ବଣ ଭିତତରକୁ ।

ଏଣେ ଜାମ୍ବି ଡେରି ନ କରି ଗୁଲ୍‌କିକୁ କାନ୍ଧେଇ ଗାଁ ଭିତରକୁ ଦୌଡ଼ିଲା । ଗାଁ ଲୋକେ ଏ ସବୁ କାଣ୍ଡ ଦେଖି ତାଜୁବ୍ । ଗୋଟେ ଦଉଡ଼ିଆ ଖଟରେ ଗୁଲ୍‌କିକୁ ପକାଇ ପାହାଡ଼ ତଳ ଡାକ୍ତରଖାନାକୁ ନେଇଗଲେ । ଡାକ୍ତର ଗୁଲ୍‌କିର ମୁମୂର୍ଷୁ ଅବସ୍ଥା ଦେଖି ଡେରି ନ କରି ଚିକିତ୍ସା ଆରମ୍ଭ କରିଦେଲେ । ଗୁଲ୍‌କି ବଞ୍ଚିଗଲା । ଦି'ମାସ ପରେ ଗୁଲ୍‌କି ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲା ।

ଜାମ୍ବିମୁଣ୍ଡାର ଏ ସାହସିକତା କାହାଣୀ ସାରା ସହରରେ ବ୍ୟାପିଗଲା । ବାରବର୍ଷର ବାଳକ ବାଘକୁ ଚକ୍‌ମା ଦେଖାଇ ଗୋଟେ ସ୍କୁଲପିଲାକୁ ବଞ୍ଚାଇପାରିଛି, ଏ କଥା ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିବାରୁ, ଏ କଥା ସ୍ଥାନୀୟ ଜିଲ୍ଲାପାଳଙ୍କ କାନକୁ ବି ଗଲା । ସେ ଜାମ୍ବିମୁଣ୍ଡାକୁ ସେ ବର୍ଷ ସାଧାରଣତନ୍ତ୍ର ଦିବସରେ 'ବୀରବାଳକ' ପୁରସ୍କାର ଦେଲେ । ପୁରସ୍କାର ନେଇ ଫେରିବାବେଳେ କେତେକ ସାମ୍ବାଦିକ ତାକୁ ପଚାରିଲେ– ପୁରସ୍କାର ପାଇ କିପରି ଲାଗୁଛି ?

ଜାମ୍ବିମୁଣ୍ଡା କହିଲା– ମୋ' ସାନଭଉଣୀ ଗୁଲ୍‌କିକୁ ବଞ୍ଚାଇପାରିଲି, ସେଇଟା ବଡ଼କଥା, ତା' ତୁଳନାରେ ଏ ପୁରସ୍କାର ବେଶୀ କ'ଣ ?

ସୁଆଁପଦା- ୭୫୮୦୨୧, କେନ୍ଦୁଝର

## ପାଟିସୁଆଦ

ସ୍କୁଲର ଶିକ୍ଷକ ଜଣେ ପିଲାକୁ ପ୍ରଶ୍ନ ପଚାରିଲେ–

ଶିକ୍ଷକ- ୧୫ଟା ଫଳର ନାମ କହିଲୁ ।

ପିଲା- ଆମ୍ବ

ସାର୍- ସାବାସ୍ !

ପିଲା- ଅମୃତଭଣ୍ଡା

ସାର୍- ଗୁଡ୍

ପିଲା- ସେଓ

ସାର୍- ବହୁତ ବଢ଼ିଆ ! ତିନିଟା ହୋଇଗଲା । ଆଉ ବାରଟା ଫଳର ନାମ କହ ।

ପିଲା- ୧ ଡର୍ଜନ କଦଳୀ ।

☆☆ ☆☆ ☆☆ ☆☆

ଗଣିତ ଶିକ୍ଷକ ଶ୍ରେଣୀରେ ପଢ଼ାଉଥିବାବେଳେ ପଚାରିଲେ ୧୦୦କିଲୋ ଯଦି ୧ଟନ୍ ହୁଏ, ତେବେ ୩୦୦କିଲୋ କେତେ ଟନ୍ ହେବ ?

ପପୁ ଉତ୍ତରଦେଲା- ଟନ୍ ଟନ୍ ଟନ୍ ।

--ରଶ୍ମି ସାହୁ, ଦିଲ୍ଲୀ

# ଛୋଟ ସିନା- କାମ ତା' ମହାନ

ଶ୍ରୀ ହରିଶ୍ଚନ୍ଦ୍ର ହୋତା

ପବିତ୍ର ତରତର ହୋଇ ବହିବସ୍ତାନି ସଜାଡ଼ିବାରେ ଲାଗି ପଡ଼ିଲା । ଶୀତଦିନ ହେତୁ ଚାହୁଁ ଚାହୁଁ ସମୟ ହୋଇଯାଉଛି । ପ୍ରଧାନ ଶିକ୍ଷକ ରମାକାନ୍ତ ଦାସ ନୂଆ କରି ବିଦ୍ୟାଳୟରେ ଯୋଗଦେଇଛନ୍ତି । ସେ ପିଲାମାନଙ୍କୁ ଶୃଙ୍ଖଳିତ, ସମୟାନୁବର୍ତ୍ତୀ ଓ ସତ୍ୟବାଦୀ ହେବାକୁ ସବୁବେଳେ ଶିକ୍ଷା ଦିଅନ୍ତି । ବସ୍ତାନି ଧରି ଦାଣ୍ଡଦୁଆରକୁ ବାହାରିଲାବେଳକୁ ସାଙ୍ଗ ଅର୍ଜୁନ, ଯଶୋବନ୍ତ, କୌଶିକ ଓ ପ୍ରିତେଶ ମଧ୍ୟ ପବିତ୍ର ପାଖରେ ପହଞ୍ଚିସାରିଥିଲେ । ସଭିଏଁ ମିଶି ଗପ କରିକରି ବିଦ୍ୟାଳୟ ଅଭିମୁଖେ ବାହାରିଲେ । ରଥପଡ଼ିଆ ପାରି ହେଲେ ହରି ସାହୁ ଛକ । ଛକରୁ ଶହେ ମିଟର ଦୂରରେ ରହିଛି ସୁନାପୋଷି ପ୍ରାଥମିକ ବିଦ୍ୟାଳୟ । ସେହି ବିଦ୍ୟାଳୟରେ ସେମାନେ ପଢ଼ନ୍ତି ।

ହରି ସାହୁ ଛକରେ ପବିତ୍ର ଅଟକିଗଲା । ସାଙ୍ଗମାନେ ପଛକୁ ଫେରି ଦେଖିଲେ ପବିତ୍ର ଠିଆ ହୋଇଛି । ତାକୁ ଯେତେ ଡାକିଲେ ବି ସେ ପରେ ଯିବ କହି ଅଟକିଗଲା । ସାଙ୍ଗମାନେ ବିଦ୍ୟାଳୟକୁ ଚାଲିଗଲେ । ପବିତ୍ର ଦେଖିଲା ଭିକାରି ବୁଢ଼ାଟିଏ ଗୋଟାପଣେ ବରଡ଼ାପତ୍ର ଭଳି ଥରୁଛି । ତା'ର ଦେହ ସାରା ପାଣି ଜୁଡୁବୁଡୁ । ପବିତ୍ରର ମନରେ ଦୟାହେଲା । ବୁଢ଼ାର ପାଖକୁ ଯାଇ ପକେଟରୁ ରୁମାଲଟି ଖୋଲି ତା'ର ଦେହସାରା ପୋଛି ପକାଇଲା ।

ପଚାରିଲା, "ମଉସା ! ତୁମେ ଏମିତି ଭିଜିଲ କେମିତି ? ତୁମର କ'ଣ କେହି ନାହାନ୍ତି ?" ଶୀତରେ ବୁଢ଼ାର ପାଟି ଖନି ବାଜିଯାଉଥିଲା । ଆଖିରୁ ତା'ର କେଇବୁନ୍ଦା ଲୁହ ନିଗିଡ଼ି ଆସିଲା । ବୁଢ଼ାର କାନ୍ଦିବା ଦେଖି ପବିତ୍ର ଆଉ କିଛି ପଚାରିବାକୁ ଉଚିତ ମନେ କଲାନାହିଁ । ପବିତ୍ର ବୁଢ଼ାର ଦେହ, ହାତ ପୋଛି ପକାଉଥିବାର ଦେଖି ଦୂରରୁ ହରି ସାହୁ ଦୋକାନୀ ରାଗ ତମତମ ହୋଇ ବୁଢ଼ା ଉପରେ ଗାଳି ବର୍ଷଣ କରିବାରେ ଲାଗିଲା । ପଞ୍ଚାଏ ଲୋକ ହରି ସାହୁର ଗାଳିକୁ ସମର୍ଥନ କରି ସମସ୍ୱରରେ ବୁଢ଼ାକୁ ନାନା କଟୁକଥା କହୁଥିଲେ ।



ପବିତ୍ର ଦେହ, ହାତ ଭଲ ଭାବରେ ପୋଛିଦେବା ପରେ ବୁଢ଼ା ସାମାନ୍ୟ ସାଷ୍ଟାମ ହେଲା । ତା'ର ମୁଣ୍ଡରେ ହାତ ବୁଲାଇ କହିଲା, "ବାବୁରେ ! ତୁ ନିଶ୍ଚୟ ଦିନେ ବଡ଼ଲୋକ ହେବୁ । ଦେଶ, ଦୁନିଆଁରେ ନାଁ କମେଇବୁ ।" ପବିତ୍ର ଭାବୁଥିଲା ସତରେ ଯେମିତି ତା'ର ବାପା କି ଜେଜେ ତାକୁ ଆଶୀର୍ବାଦ ଦେଉଛନ୍ତି । ବୁଢ଼ାଠାରୁ ଜାଣିବାକୁ ପାଇଲା ସେ ତିନିଦିନ ହେଲା କିଛି ଖାଇନାହିଁ । ତା' ପେଟ ପିଠିରେ ଲାଗିଯାଉଥିଲା । ପବିତ୍ର ମନରେ ଦୟାଭାବ ଆସିଲା ।

ଖେଳଛୁଟିରେ ମାଆ ତାକୁ ଜଳଖିଆ ଖାଇବା ପାଇଁ ଦେଇଥିବା ତା'ର ମନେପଡ଼ିଲା । ସେ ସଙ୍ଗେ ସଙ୍ଗେ ହରି ସାହୁ ଜଳଖିଆ ଦୋକାନକୁ ଗଲା । ସେତେବେଳ ପର୍ଯ୍ୟନ୍ତ

ହରି ସାହୁ ବୁଢ଼ାକୁ ବଡ଼ପାଟିରେ ଗାଳିଗୁଲଜ କରୁଥିଲା । ପବିତ୍ରକୁ ଦେଖି କହିଲା, "ବାଃ ବାଃରେ ଦେଶସେବକ । ପାଠ ଛାଡ଼ି ପିଲାର ନାଟ ଦେଖ ।" ପବିତ୍ର ଧୈର୍ଯ୍ୟ ଧରି ଆଉ ରହିପାରିଲା ନାହିଁ । ନରମ ଗଳାରେ କହିଲା, "ହରିହର ମଉସା ! ସେ ବୁଢ଼ା ଲୋକ ତୁମ ବାପା, ଜେଜେ ବୟସର ହେବେ । ତାଙ୍କ ପିଲାପିଲିମାନେ ନିଷ୍ଠୁର ହୋଇ ଏ ବୟସରେ ତାଙ୍କୁ ଭିକ୍ଷାଥାଳ ଧରାଇ ଛାଡ଼ିଦେଇଛନ୍ତି । ତା'ବୋଲି କ'ଣ ସମାଜରେ ମଣିଷପଣିଆ ଲୋପ ପାଇଗଲାଣି ? ମଉସା ! ତୁମକୁ ନେହୁରା ହେଉଛି, ତୁମ ଗୋଡ଼ ଧରୁଛି । ଏ ପରିଣତ ବୟସର ଲୋକଙ୍କୁ ଗାଳି କରିବା, ଥଟ୍ଟାମଜା କରିବା ଭଲ କଥା ନୁହଁ । ଏଇ ଦଶଟଂକା ନିଅ । ଜଳଖିଆ କିଛି ଦିଅ । ବୁଢ଼ା ତିନିଦିନ ହେଲା ଭୋକିଲା ଅଛନ୍ତି । ତାଙ୍କ ମୁହଁରେ ଆହାର ଟିକେ ଦେବି ।''

ଜଳଖିଆ ଆଣି ବୁଢ଼ା ପାଖରେ ପହଞ୍ଚିଲା ପବିତ୍ର । ବୁଢ଼ା ବଲବଲ କରି ଚାହିଁ ରହିଥାଏ । ପବିତ୍ର ନିଜେ ଖୁଆଇଦେଲା । ବୁଢ଼ାର ଆଖିରୁ ଖୁସିରେ ଆଉ ଦୁଇବୁନ୍ଦା ଲୁହ ଝରିଆସିଲା । ନିଜ କୋଳକୁ ପବିତ୍ରକୁ ଆଉଜାଇ ନେଇ ଚୁମାଟିଏ ଦେଲା । ପବିତ୍ର ନିଜ ପାଣି ବୋତଲରୁ ପାଣି ପିଇବାକୁ ଦେଇ ତରତର ହୋଇ ବିଦ୍ୟାଳୟକୁ ଚାଲିଗଲା । ସେତେବେଳକୁ ପ୍ରାର୍ଥନା ଘଣ୍ଟା ବାଜିସାରିଥିଲା । ଶିକ୍ଷକ, ଶିକ୍ଷୟିତ୍ରୀ ଓ ପିଲାମାନେ ଧାଡ଼ିବାନ୍ଧି ପ୍ରାର୍ଥନା କରିବାରେ ଲାଗିଥିଲେ । ପବିତ୍ର କିଛି ଉପାୟ ନ ପାଇ ଫାଟକ ପାଖରେ ଠିଆହେଲା ।

ପ୍ରାର୍ଥନା ସରିବା ପରେ ପ୍ରଧାନ ଶିକ୍ଷକ ଦୂରରୁ ପବିତ୍ରକୁ ଫାଟକ ପାଖରେ ଠିଆ ହୋଇଥିବାର ଦେଖିଲେ । ପିଲା ପଠାଇ ସେ ପବିତ୍ରକୁ ପାଖକୁ ଡାକିଲେ । ସେତେବେଳକୁ ପବିତ୍ର ଖୁବ୍ ଡରିଯାଇଥାଏ । ସାଙ୍ଗ ପିଲାମାନେ ମଧ୍ୟ ଭାବୁଥାନ୍ତି ପବିତ୍ର ଆଜି ନିଶ୍ଚୟ ମାଡ଼ ଖାଇବ । ସେ ଡରି ଡରି ପ୍ରଧାନ ଶିକ୍ଷକଙ୍କ ନିକଟକୁ ଗଲା । ଡେରିରେ ଆସିବାର କାରଣ ପଚାରିବାରୁ ସେ ସବୁ ଘଟଣା ଖୋଲାଖୋଲି କହିଦେଲା । ପ୍ରାର୍ଥନା ସଭା ଭଙ୍ଗ କରି ପ୍ରଧାନ ଶିକ୍ଷକ ପବିତ୍ର ସହିତ ହରି ସାହୁ ଛକକୁ ଯାଇ ଭିକାରି ବୁଢ଼ା ପ୍ରତି ସେ ଦେଖାଇଥିବା ସହାନୁଭୂତି ସମ୍ପର୍କରେ ଜାଣିବାକୁ ପାଇଲେ । କିଛି ସମୟ ପରେ ସେ ବିଦ୍ୟାଳୟକୁ ଫେରିଆସିଲେ । ଦିନ ସାରା ପାଠପଢ଼ାରେ ପବିତ୍ରର ମନ ଲାଗୁ ନ ଥାଏ । ତା' ଆଖି ଆଗରେ ଭିକାରି ବୁଢ଼ା ଓ ହରି ସାହୁର ଛବି ଉଙ୍କି ମାରୁଥାଏ ।

ଚାରିଟା ହେଲା । ଛୁଟି ଘଣ୍ଟା ବାଜିଲା । ପିଲାମାନେ ପୁଣି ଧାଡ଼ି ବାନ୍ଧି ଠିଆ ହେଲେ । ଜାତୀୟ ସଂଗୀତ ଗାନ କଲା ପରେ ପ୍ରଧାନ ଶିକ୍ଷକ ପିଲାମାନଙ୍କ ଉଦ୍ଦେଶ୍ୟରେ କହିଲେ, "ପବିତ୍ର ଆଜି ଜଣେ ଭିକାରି ବୁଢ଼ା ପ୍ରତି ଯେଉଁ ମହତ୍ ଆଚରଣ ଦେଖାଇଲା, ତାହା ଜଣେ ଛୋଟପିଲା ପାଖରେ ନୁହେଁ, ଜ୍ଞାନୀ, ଗୁଣୀ, ବିଜ୍ଞବ୍ୟକ୍ତିଙ୍କ ପାଖରେ ମଧ୍ୟ ଦେଖା ଯାଇ ନ ଥାଏ । ତା'ର ଏହି ଉତ୍ତମ କାର୍ଯ୍ୟ ପାଇଁ ଚଳିତ ବର୍ଷ ବାର୍ଷିକ ଉତ୍ସବରେ ସେ ବିଦ୍ୟାଳୟର ସର୍ବୋତ୍ତମ ଛାତ୍ର ରୂପେ ପୁରସ୍କୃତ ହେବ ।"

''ସମସ୍ତେ ଆଗାମୀ ଦିନରେ ଏଭଳି ଭଲ କାମ କରିବାକୁ ପବିତ୍ରଠାରୁ ଶିକ୍ଷା କର'' ବୋଲି ପ୍ରଧାନଶିକ୍ଷକ କହିଲେ । ସମବେତ ଛାତ୍ରଛାତ୍ରୀଙ୍କ କରତାଳିରେ ବିଦ୍ୟାଳୟ ପରିସର ପ୍ରକମ୍ପିତ ହୋଇଉଠିଲା ।

ମୂଷାବଣୀ ପ୍ରକଳ୍ପ ଉ.ପ୍ରା ବିଦ୍ୟାଳୟ, ଭାଲୁବସା, ହାଟବାଦଡ଼ା, ମୟୂରଭଞ୍ଜ- ୭୫୭୦୫୦

# ମନ ଦେଇ ପଢ଼

ଶ୍ରୀ ରବୀନ୍ ଖଣ୍ଡାୟତରାୟ

ଆସ କୁନା ମୁନା ଡାକି ଗୁନା ଝୁନା
ପାଠ ପଢ଼ିବାକୁ ଯିବ,
ମନଦେଇ ପାଠ ପଢ଼ିଲେରେ ପିଲେ
ଭବିଷ୍ୟ ଉଜ୍ଜ୍ୱଳ ହେବ ।
ପାଠ ପରା ତୁମ ଅମୂଲ୍ୟ ରତନ
ଚୋରି ହୋଇ ନ ପାରିବ,
ଭାଇବନ୍ଧୁ କେବେ ଭାଗ ନେବେ ନାହିଁ
ଦାନ କଲେ ନ ସରିବ ।
ଆଜି ସିନା ତୁମେ ଛୋଟ ଛୋଟ ଅଛ
କାଲି ଯେବେ ବଡ଼ ହେବ,
ପାଠପଢ଼ି ସବୁ ଜାଣିଯିବ ଯଦି
ତା'କୁ ଖଟାଇ କାମ କରିବ ।
ହାତରୁ ସମୟ ଖସିଗଲେ ଥରେ
ଆଉ ଫେରି ନ ଆସିବ,
ଏବେଠାରୁ ତେଣୁ ମନ ଦେଇ ପଢ଼
ପଛରେ ପଡ଼ି ନ ଯିବ ।

ମୁଖ୍ୟ ଗ୍ରନ୍ଥାଗାରିକ, କିସ୍, କିଟ୍ କ୍ୟାମ୍ପସ-୧୦, ଭୁବନେଶ୍ୱର-୨୪

ସା.ଜ୍ଞା ପରୀକ୍ଷାର ଉତ୍ତର– ୧) ମେଘକୁ ବୁଝିବା, ୨) ଛତିଶଗଡ଼, ୩) ଭାରତ, ୪) ପ୍ରତିଭା ରାୟ, ୫) ଚିଲି, ୬)୨୦୦୬ ମସିହା, ୭) ଓ୍ୱିଲିଅମ୍ ଏଲ୍.ପଟ୍‌ସ୍, ୮) ମୋତିଲାଲ ନେହେରୁ, ୯) ୧୯୨୯ ମସିହା, ୧୦) ମାଲାମାଲ୍, ।



# ବ୍ରାହ୍ମୀ ଶାଗର ଉପକାରିତା

ଶ୍ରୀମତୀ ମାଧବୀଲତା ମଲ୍ଲିକ

ସାଧାରଣତଃ ଶାଗ ଖାଇବା ସ୍ୱାସ୍ଥ୍ୟପକ୍ଷେ ହିତକର । ଶାଗରେ ଯଥେଷ୍ଟ ପରିମାଣରେ ଆଇରନ୍ ଅକ୍‌ସାଇଡ୍ ରହିଥାଏ । ବିଭିନ୍ନପ୍ରକାର ଶାଗ ମଧ୍ୟରୁ ବ୍ରାହ୍ମୀ ଶାଗର ଉପକାରିତା ସଂପର୍କରେ କେତୋଟି କଥା–

୧) ବ୍ରାହ୍ମୀ ଶାଗକୁ ନିୟମିତ କିଛିଦିନ ଖାଇଲେ ସହଜରେ ଯକୃତ ରୋଗରୁ ଉପଶମ ମିଳେ ।

୨) ପିଲାମାନେ ବ୍ରାହ୍ମୀ ଶାଗକୁ କିଛିଦିନ ନିୟମିତ ଖାଇଲେ ସେମାନଙ୍କର ସ୍ମରଣଶକ୍ତି ବୃଦ୍ଧି ହୁଏ ।

୩) ଶରୀରର ଯେକୌଣସି ସ୍ଥାନରେ ମାଡ଼ ହୋଇଥିଲେ, ସେହି ସ୍ଥାନରେ ବ୍ରାହ୍ମୀ ଶାଗକୁ ବାଟି ଲଗାଇଦେଲେ ଦରଜ କମିଯାଏ ।

୪) ଆଲଜାଇମର୍ ରୋଗୀ ଏହି ଶାଗକୁ କିଛିଦିନ ନିୟମିତ ଖାଇଲେ ଉପକାର ମିଳେ ।

୫) ବ୍ରାହ୍ମୀ ଶାଗକୁ କିଛିଦିନ ନିୟମିତ ଖାଇଲେ ଅନିଦ୍ରାରୋଗୀକୁ ସହଜରେ ନିଦ ହୁଏ ।

୬) ବ୍ରାହ୍ମୀ ଶାଗ ସ୍ନାୟୁର ଟନିକ୍ ଭଳି କାମ କରେ, ଏଣୁ ଏହାକୁ ଠିକ୍ ଭାବେ ବ୍ୟବହାର କରିବା ଉଚିତ୍ ।

ଡିମିରି, ନୋଦା, କଟକ



# ଟିଙ୍କି

ନିବେଦିତା ଷଡ଼ଙ୍ଗୀ

ସେଦିନ ରବିବାର । ଓମ୍ ତା' ସାଙ୍ଗମାନଙ୍କ ସାଙ୍ଗେ ମାମାଙ୍କଠାରୁ ସତ ଗପ ଶୁଣିବାର ଦିନ । ମାମା କହିଲେ– ଆଜି ମୁଁ ତମମାନଙ୍କୁ କେନ୍ଦ୍ରାପଡ଼ା ଜିଲାର ବାଙ୍କୁଆଳ ଗାଁରେ ରହୁଥିବା ଝିଅଟିଏ ବିଷୟରେ ସତଗପ କହିବି । ସେଇ ଝିଅଟିର ବୟସ ୭ ବର୍ଷ । ଝିଅଟିର ଡାକ ନାଁ ଟିକି ଆଉ ଭଲ ନାଁ ମମତା ଦଳାଇ ।

ଓମ୍ ପଚାରିଲା– ମାମା, କେନ୍ଦ୍ରାପଡ଼ା ଜିଲାରେ ଭିତରକନିକା ଅଭୟାରଣ୍ୟ ଅଛି ନାଁ ?

ହଁ, ଓଡ଼ିଶାର ପୂର୍ବ ଉପକୂଳରେ ବ୍ରାହ୍ମଣୀ, ବୈତରଣୀ ଓ ଧାମରା ନଦୀ ମୁହାଣରେ ଥିବା ବିସ୍ତୃତ ଲୁଣା ଜଙ୍ଗଲ ନାଁ 'ଭିତର କନିକା ଅଭୟାରଣ୍ୟ' ।" କହିଲେ ମାମା । ସୋହମ୍ କହିଲା– "ଆରେ ହଁ, ଆମେ ଥରେ ଭିତର କନିକା ବୁଲିଯାଇଥିଲୁ । ଗୋଟିଏ ଜାଗାରେ ହଜାର ହଜାର ବଗବଗୁଲୀ ଏକାଠି ଦେଖିଥିଲୁ ।"

ମାମା କହିଲେ, "ଭିତରକନିକା ଭିତରେ ପ୍ରାୟ କୋଡ଼ିଏ ଏକର ପରିମିତ ଜାଗାରେ ହଜାର ହଜାର ବଗବଗୁଲୀ ବସା ବାନ୍ଧିଛନ୍ତି । ସେଥିପାଇଁ ସେଇ ଜାଗାଟିର ନାଁ 'ବଗ ଗହଣ' ଦିଆଯାଇଛି ।

ସେ ମାମାଙ୍କ ହାତକୁ ହଲାଇଦେଇ କହିଲା, "ତମେ ଟିକି ବିଷୟରେ ଗପ କହୁଥିଲ ପରା !"

ଆରେ ହଁ ହଁ କହୁଛି– ଟିକିର ଗାଁ ଭିତରକନିକା ଅଭୟାରଣ୍ୟ ପାଖରେ । ଦିନେ ଟିକି ଆଉ ତା' ବଡ଼ବାପା ଝିଅ ଭଉଣୀ ଅଶାନ୍ତି– ଦୁହେଁ ସାଙ୍ଗ ହୋଇ ନଦୀ କୂଳକୁ ଶୌଚ ହେବା ପାଇଁ ଯାଇଥିଲେ । ନଦୀରେ ଥିବା ଗୋଟାଏ ବଡ଼ କୁମ୍ଭୀର ଅଶାନ୍ତିର ହାତକୁ କାମୁଡ଼ି ଧରିଲା । ଅଶାନ୍ତିର ଚିତ୍କାର ଶୁଣି ଟିକି ପ୍ରାଣପଣେ ତା'ର ସବୁ ଖଟେଇ ଅଶାନ୍ତିକୁ କୁମ୍ଭୀର କବଳରୁ ଛଡ଼ାଇବାକୁ ଟାଣିକି ଧରିଥାଏ । ଇଆଡ଼େ ଜୋର୍‌ରେ ପାଟି କରି ଅନ୍ୟମାନଙ୍କୁ ଡାକ ପକଉଥାଏ । କୁମ୍ଭୀର ଅଶାନ୍ତିକୁ ନଇ ଭିତରକୁ ଟାଣିନେବାକୁ ଚେଷ୍ଟା କରୁଥାଏ । ଟିକି ତଳୁ ମୁଠାଏ ବାଲି ଉଠାଇ କୁମ୍ଭୀର ଆଖିରେ ମାଡ଼ିଦେଲା । କୁମ୍ଭୀର ଅଶାନ୍ତିର ହାତକୁ ଛାଡ଼ିଦେଇ ନଇ ଭିତରକୁ ଚାଲିଗଲା ।"

"ବାପ୍‌ରେ......ଏତେ ଛୋଟ ଝିଅଟିର ଏ.....ତେ ସାହସ !" ବିସ୍ମୟରେ କହିଲା, ଦେବଦତ୍ତା ।

ସେଇ କଥା ତ । ସେଇଥିପାଇଁ ଟିକିର ନାଁ, ଫଟୋ ଖବର କାଗଜମାନଙ୍କରେ ବାହାରିଲା । ମୁଖ୍ୟମନ୍ତ୍ରୀ ଟିକିକୁ ସଚିବାଳୟକୁ ଡକେଇ ତା' ସହ ଫଟୋ ଉଠାଇଲେ । ଆଶୀର୍ବାଦ କରି ଟିକିକୁ ସାଇକେଲ ଉପହାର ଦେଲେ ।

ସୋହମ୍ କହିଲା– "ତା'ହେଲେ ତ ଟିକି ସାହସିକତା ପାଇଁ ଗଣତନ୍ତ୍ର ଦିବସରେ ପୁରସ୍କୃତ ହେବା ଉଚିତ ।"

"ହଁ, ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ଅନେକ ଜାତୀୟ ପୁରସ୍କାର– ଏଇ ଯେମିତି ଭରତ ପୁରସ୍କାର, ସଞ୍ଜୟ ଚୋପ୍ରା ପୁରସ୍କାର, ଗୀତା ଚୋପ୍ରା ପୁରସ୍କାର, ବାପୁ ରାଇଧାନୀ ପୁରସ୍କାର, ଇତ୍ୟାଦି ଭିତରୁ ଟିକି ନିଶ୍ଚୟ ଗୋଟିଏ ପୁରସ୍କାର ପାଇବ । ସେଥିପାଇଁ ଆମ ରାଜ୍ୟ ସରକାର ଭାରତୀୟ ଶିଶୁ କଲ୍ୟାଣ କାଉନ୍‌ସିଲ୍‌କୁ ବିବରଣୀ ପଠାଇଛନ୍ତି ।"

ଏ ପର୍ଯ୍ୟନ୍ତ ଚୁପ୍‌ଚାପ୍ ଗପ ଶୁଣୁଥିବା ଅନନ୍ୟା ପାଟି ଖୋଲିଲା, "ଏଇ କୁମ୍ଭୀରଗୁଡ଼ାକୁ ମାରିଦିଆଯିବା ଉଚିତ୍ ।" ଅନନ୍ୟା ପାଟି ଖୋଲିଲା । ଅନନ୍ୟାର ମୁଣ୍ଡକୁ ସାଉଁଳି ଗେଲ କରୁ କରୁ ମାମା କହିଲେ, "ଆରେ ନାଁ ନାଁ । ସୃଷ୍ଟିରେ ସବୁ ଜୀବଜନ୍ତୁ ରହିଲେ ହିଁ ଜୈବ ବିବିଧତାରେ ସନ୍ତୁଳନ ରହିବ । ଜୈବ ବିବିଧତା ବିଖଣ୍ଡିତ ହେଲେ ପ୍ରାକୃତିକ ବିପର୍ଯ୍ୟୟ ଘଟି ପୃଥିବୀ ଧ୍ୱଂସ ହୋଇଯିବ ।

କୌଣସି ଜୀବଜନ୍ତୁ ହିଂସ୍ର କି ଖରାପ ନୁହନ୍ତି । ଆମର ଯେମିତି ଖାଦ୍ୟର ଆବଶ୍ୟକତା ରହିଛି, ସେମାନେ ସେମିତି ନିଜ ଖାଦ୍ୟ ପାଇଁ ଶିକାର କରନ୍ତି । ମୁଁ ତମମାନଙ୍କୁ ବିଦେଶରେ ଘଟିଥିବା ସତ ଗପଟିଏ କହୁଛି । ତମେମାନେ ଜାଣିପାରିବ, ଯେଉଁ କୁମ୍ଭୀରକୁ ଖରାପ କହୁଛ, ସିଏ ବି ମଣିଷଠାରୁ ସ୍ନେହ, ଶ୍ରଦ୍ଧା ପାଇଲେ ପୋଷା ମାନିଯାଏ ।

ଗ୍ଲିବରଟୋ ଚିଟୋ ସେଡେନ୍ (Gilberto Chito Shedden) ଜଣେ ମତ୍ସ୍ୟଜୀବୀ । ସବୁଦିନ ସେ ରିଭେନ୍‌ଟୋଜେନ୍ (Reventozon) ନଦୀରୁ ମାଛ ଧରି ଜୀବିକା ନିର୍ବାହ କରନ୍ତି । ଦିନେ ସେ ଦେଖିଲେ– ଗୋଟିଏ ୬/୭ ଫୁଟିଆ କୁମ୍ଭୀର ନଈ କୂଳରେ ଅଧା ବାଲି, ଅଧା ପାଣିରେ ଶୋଇଛି । ସେ ମାଛ ଧରିବାକୁ ଡଙ୍ଗା ନେଇ ନଦୀ ଭିତରକୁ ଚାଲିଗଲେ ।

କିଛି ଘଣ୍ଟା ପରେ ମାଛ ଧରି ସାରି ଫେରିଲେ । ଦେଖିଲେ ସକାଳଠାରୁ କୁମ୍ଭୀରଟି ସେଇ ନିର୍ଦ୍ଦିଷ୍ଟ ସ୍ଥାନରେ, ଏକା ଭଙ୍ଗୀରେ ଶୋଇଛି । ଘଟଣାଟା କ'ଣ ? ଏତେ ସମୟ ହେଲା ଗୋଟିଏ ଜାଗାରେ ଶୋଇଛି କାହିଁକି ? ଉତ୍ସୁକତା ଯୋଗୁଁ ଟିଟୋ କୁମ୍ଭୀରଟିକୁ ଭଲଭାବେ ଦେଖିବା ପାଇଁ ତା' ନିକଟକୁ ଗଲେ । ଦେଖିଲେ କୁମ୍ଭୀରଟି ଦେହରେ ଏକାଧିକ ଗୁଳି ବିଦ୍ଧ ହେବାର ଚିହ୍ନ ରହିଛି ।

ଚିଟୋ ନଈ ପାଖରେ ଥିବା ନିଜ ଘରକୁ ଫେରିଗଲେ; କିନ୍ତୁ କୁମ୍ଭୀରଟିର ଦୁର୍ଦ୍ଦଶା ତାଙ୍କ ଦରଦୀ ମନକୁ ଆନ୍ଦୋଳିତ କରୁଥିଲା । ସେ ପଡ଼ୋଶୀଙ୍କୁ କୁମ୍ଭୀରଟି ବିଷୟରେ କହିଲେ । ପଡ଼ୋଶୀ କହିଲେ, "ସେ କୁମ୍ଭୀର ଗୋଟିଏ ବାଛୁରୀକୁ ନଈ ଭିତରକୁ ଘୋଷାରି ନେଇ ମାରି ଦେଇଥିବାରୁ ବାଛୁରୀ ମାଲିକ ଚାଷୀଜଣଙ୍କ ରାଗିଯାଇ ତାକୁ ଗୁଳିବିଦ୍ଧ କରିଛନ୍ତି ।

ଟଟୋ ପୁଣି ନଈକୂଳକୁ ଫେରିଲେ । କୁମ୍ଭୀରର ସେବାଶୁଶ୍ରୂଷା କଲେ । ଔଷଧ ଲଗେଇଲେ । କୁମ୍ଭୀରଟିକୁ ନିଜ ଘରକୁ ନେଇଆସିଲେ । କିଛି ଦିନ ପରେ କୁମ୍ଭୀରଟି ସୁସ୍ଥ ହୋଇଗଲା । ଚିଟୋ ତାକୁ ନେଇ ରିଭେନ୍‌ଟାଜୋନ୍ ନଦୀରେ ଛାଡ଼ିଦେଲେ । କିଛି ଘଣ୍ଟା ପରେ କୁମ୍ଭୀରଟି ଫେରିଆସି ଟିଟୋଙ୍କ ଘରେ ହାଜର ହୋଇଗଲା ।

ତା ପରଠୁ ଟିଟୋ ଓ କୁମ୍ଭୀର ନଦୀରେ ଏକାଠି ପହଁରିଲେ । ଟିଟୋ କୁମ୍ଭୀରର ବିରାଟ ଆଁ ଭିତରେ ମୁଣ୍ଡ ପୂରାଇଲେ, ଟିଟୋ ତାଙ୍କ ମୁଣ୍ଡ ବାହାରକୁ ନ ନେବା ପର୍ଯ୍ୟନ୍ତ କୁମ୍ଭୀରଟି ଆଁ ମେଲା କରି ରହୁଥିଲା । ଆସ୍ତେ ଆସ୍ତେ ଚିଟୋ ଓ କୁମ୍ଭୀର ଏକାଠି ବିଭିନ୍ନ ପ୍ରକାରର ପହଁରା କୌଶଳ ଦେଖିବାକୁ ପର୍ଯ୍ୟଟକଙ୍କ ଭିଡ଼ ଜମିଲା । ଚିଟୋଙ୍କ ସହ କୁମ୍ଭୀରର ଖେଳର ବୃତ୍ତଚିତ୍ର ତିଆରି ହୋଇ ପ୍ରଚାରିତ, ପ୍ରସାରିତ ହେବା ପରେ ଚିଟୋ 'Crocodile Man' ଭାବେ ପ୍ରସିଦ୍ଧି ଲାଭ କଲେ ।

ୟୁ ଟ୍ୟୁବ୍‌ରୁ ଭିଡିଓଟି ବାହାର କରି ପିଲାମାନଙ୍କୁ ଦେଖାଇବା ପରେ ମାମା କହିଲେ, "ଆମ ମଣିଷମାନଙ୍କର ଗୋଟିଏ ମସ୍ତବଡ଼ ଭୁଲ୍ ଧାରଣା ଅଛି । ସେଥିପାଇଁ ପ୍ରାଣୀଜଗତ, ଉଦ୍ଭିଦ ଜଗତକୁ ମଣିଷମାନେ ନିଜର ଖାଦ୍ୟ ଭାବେ ବା ମନୋରଞ୍ଜନର ମାଧ୍ୟମ ଭାବେ ବା ସେବକ ଭାବେ ବ୍ୟବହାର କରି ହତ୍ୟା କରି ଚାଲିଛନ୍ତି । ଗୁଡ଼ାଏ ପାଠ ପଢ଼ିଥିବା ଜ୍ଞାନୀ, ମୂର୍ଖ, ଅମଣିଷମାନେ ବୁଝିପାରୁନାହାନ୍ତି– ଏ ପୃଥିବୀ ଉଦ୍ଭିଦଜଗତ ଏବଂ ଜୀବଜଗତର ଉପସ୍ଥିତି, ଅବଦାନ ଯୋଗୁଁ ହିଁ ତିଷ୍ଠି ରହିଛି ।

ବିଶ୍ୱନାଥପୁର, ବାଲିପାଟଣା, ଖୋର୍ଦ୍ଧା– ୭୫୨୧୦୨

# ବାବନାଭୂତ କଥା

ଶ୍ରୀ ରବିନାରାୟଣ ମହାପାତ୍ର

ତୁଙ୍ଗଭଦ୍ରା ନଦୀ କୂଳରେ ଜ୍ଞାନପୁର ନାମକ ଗାଁ'ଟିଏ । ଗାଁ'କୁ ଲାଗି ଏକ ଭୟଙ୍କର ମଶାଣି ଥାଏ, ଯାହାର ରାଜା ଥିଲା ବାବନା ଭୂତ । ତାହାର ଅଧୀନରେ ଥିବା ଭୂତ, ଡାହାଣୀ ଓ ଚିରଗୁଣୀ ତାହାର ଆଦେଶ ପାଳନ କରନ୍ତି । ବାଟରେ ଯାଉଥିବା ଲୋକଙ୍କୁ ଢେଲାପଥର ପକାଇ ହଇରାଣ କରନ୍ତି ।

ସେମାନଙ୍କୁ ଦେଖି ଲୋକମାନେ ଡରିଯାଇ ମୃତ୍ୟୁ ମୁଖରେ ପଡ଼ନ୍ତି । ଭୂତମାନଙ୍କର ଏପରି ଉତ୍ପାତ ଯୋଗୁ ଗାଁବାଲାମାନେ ଡରି ଡରି ବଡ଼ କଷ୍ଟରେ ଦିନ କାଟୁଥାନ୍ତି ।



ଦିନେ ସୋମରାଷ୍ଟ୍ର ଦେଶରୁ ଶୁଦ୍ରକ ରାଉଳ ବୋଲି ଜଣେ ବ୍ୟକ୍ତି ଆସି ସେହି ଗାଁରେ ପହଞ୍ଚିଲେ । ତାଙ୍କୁ ଗୁଣିଗାରେଡ଼ି ଜଣାଥିଲା । ଲୋକମାନେ ତାଙ୍କୁ ଦେଖି ଖୁବ୍ ଖୁସିହେଲେ । ତାଙ୍କ ପାଇଁ ଘରଦ୍ୱାର କରିଦେଲେ । ରାଉଳଙ୍କର ଚାଷ ପାଇଁ ଜମି ଦରକାର ହେବାରୁ ସେ ନିଜେ ସ୍ଥିର କଲେ ଯେ ମଶାଣିକୁ ଲାଗି ଯେଉଁ ଅନାବାଦୀ ଜମି ଅଛି, ତାକୁ ତାଡ଼ି ଚାଷ କରିବେ । ଚାଷ ଜମିରୁ ଯାହା ଉତ୍ପନ୍ନ ହେବ, ତାକୁ ବିକି ତାଙ୍କ ପରିବାର ପୋଷିବେ ।

ଗାଁ'ଲୋକଙ୍କୁ ତାଙ୍କ ମନ କଥା କହିବାରୁ ସେମାନେ ତାଙ୍କୁ ବାବନାଭୂତର ଉପଦ୍ରବ କଥା କହିଲେ ଓ ସେ ଜମିରେ ଚାଷ ନ କରିବାକୁ ଉପଦେଶ ଦେଲେ । ଶୁଦ୍ରକ କହିଲେ, "ମୁଁ କେତେ ଭୂତପ୍ରେତଙ୍କୁ ସାବାଡ଼ କରିଛି । ବାବନାଟା କେତେମାତ୍ର । ମୁଁ ଏ ବର୍ଷ ସେ ଜମିରେ ମାଘତିଳ ଚାଷ କରିବି । ମୋତେ ହଳ ଚାରିଟା ଯୋଗାଡ଼ କରିଦିଅ । ତେଣିକି ଦାୟିତ୍ୱ ମୋର । ତୁମେମାନେ ବ୍ୟସ୍ତ ହୁଅନାହିଁ । ମୁଁ କେବଳ ଚାଷ ଆରମ୍ଭ କରେ, ଦେଖିବ ବାବନା କିପରି ଏ ସ୍ଥାନ ଛାଡ଼ି ଯାଉଛି ।"

ହଳ କାମ ଆରମ୍ଭ ହେବାରୁ ବାବନାଭୂତ ତା'ର ଚରମାନଙ୍କଠୁ ଏ ଖବର ପାଇଗଲା । ତା'ର ଆଦେଶରେ ଶହ ଶହ ଭୂତ କିଳିକିଳା ନାଦରେ ହଳିଆମାନଙ୍କୁ ଡରାଇଲେ । ଏ କଥା ଶୁଣି ଶୁଦ୍ରକ ରାଉଳ ସେଠାରେ ପହଞ୍ଚିଗଲା ଓ ତା'ର ବିଦ୍ୟା ପ୍ରୟୋଗ କଲା । ଦଉଡ଼ି, ଠେଙ୍ଗାରେ ଭୂତମାନଙ୍କୁ ପାନେ ଦେଲା । ଭୂତମାନେ ବିକଳ ହୋଇ ସେମାନଙ୍କୁ ମୁକ୍ତି ଦେବାକୁ ପ୍ରାର୍ଥନା କରିବାରୁ ରାଉଳ କହିଲା, "ମତେ ଯଦି ଷାଠିଏ ପଉଟି ତିଳ ଦେବ, ତେବେ ତମମାନଙ୍କୁ ମୁକ୍ତି ମିଳିବ ।"

ସେମାନେ ରାଜି ହୋଇ ଚାଲିଗଲେ । ବାବନା-ଭୂତକୁ ସବୁକଥା କହିଲେ । ବାବନାଭୂତ କିନ୍ତୁ ଏ କଥାରେ ରାଜି ହେଲାନାହିଁ । ସେ ତା'ର କାମ କରିବ ବୋଲି କହି ଚାଲିଗଲା ।

ଦିନେ ରାଉଳ ଘରେ ପହଞ୍ଚି ଦେଖିଲା ତା' ପୁଅ



ଖାଲି ଚିତ୍କାର କରି ନାଚୁଛି । ଯାଡୁସ୍ୟାଡୁ କଥା କହୁଛି । ରାଉଳ ଜାଣିଗଲା ଘଟଣା କ'ଣ । ତା'ପରେ ରାଉଳ ତାର କାମ ଆରମ୍ଭ କଲା । ସେ ବାବନାଭୂତ ରାଜାକୁ ଘଉଡ଼େଇବା ପାଇଁ ମନ୍ତ୍ରପଢ଼ା ଆରମ୍ଭ କଲା । ଏମିତି ପିଟିଲା ଯେ ବାବନାଭୂତ ବିକଳରେ ଛାଟିପିଟି ହେଲା ।

ତା'ପରେ ବାଧ ହୋଇ ବାବନାଭୂତ ରାଉଳକୁ ଷାଠିଏ ପଉଟି ତିଳ ଦେଲା । ସେ ଜାଗା ଛାଡ଼ି ସେମାନେ ଚାଲିଗଲେ । ରାଉଳ ସେମାନଙ୍କୁ ମୁକ୍ତି ଦେଲା ।

ଗ୍ରାମବାସୀ ରାଉଳକୁ ଧନ୍ୟ ଧନ୍ୟ କହିଲେ । ତା'ପରଠାରୁ ସମସ୍ତେ ଆରାମରେ ରହିଲେ ।

(ଜେଜେମା' କାହାଣୀ)

୭-ବସୁନ୍ଧରା କମ୍ପ୍ଲେକସ୍, ପୋ- କିଟସ୍,
ଭୁବନେଶ୍ୱର- ୭୫୧୦୨୪

---

### ସାହିତ୍ୟ ଜ୍ଞାନ ପରୀକ୍ଷାର ଉତ୍ତର

୧) ରାମକୃଷ୍ଣ ନନ୍ଦ, ୨) ଗୋପୀନାଥ ମହାନ୍ତି, ୩) ବଳରାମ ଦାସ, ୪) ଶତ୍ରୁଘ୍ନ, ୫) ନିମାଇଁ ଚରଣ ହରିଚନ୍ଦନ, ୬) ବାବାଜୀ, ୭) ଜୀବଦେବ ଆଚାର୍ଯ୍ୟ, ୮) ପୁରୁଷୋତ୍ତମ ଦେବ, ୯) ଗୋପାଳ ଚନ୍ଦ୍ର କାନୁନ୍‌ଗୋ, ୧୦) ଗୋପାଳ ପ୍ରହରାଜ ।

## ଜୀବନ ଯମୁନା

କବିଶ୍ରୀ ଅଦ୍ୱୈତ ପ୍ରସାଦ ନାୟକ

ଜୀବନ ଯମୁନା ଉଜାଣି ବହେଲୋ
କୁଳୁକୁଳୁ ଗୀତ ଗାଇ,
ଶୁଣରେ ମାନବ ତୁମେ ଅଟ ଶ୍ରେଷ୍ଠ
ତୁମପରି ବନ୍ଧୁ ନାଇଁ ।୧।

ଶିକ୍ଷାଦୀକ୍ଷାଠାରୁ ବିଚାରବୁଦ୍ଧିରେ
ତୁମେ ମୋ ଆଗୁଆ ରହି
ଦରିଦ୍ରର ନିଧି ଦୟାର ସାଗର
ବିଚାର ବୁଦ୍ଧିରେ ତହିଁ ।୨।

ପ୍ରକୃତିମାନେ ତ ହଲାଇ ଦିଅନ୍ତି
ତହିଁ ସଙ୍ଗେ ଷଡ଼ରିପୁ
ତାଙ୍କ କବଳରେ ପଡ଼ି ତୁମେ ଗଲେ
ଦୋହଲାଇ ଦ୍ୟନ୍ତି ବପୁ ।୩।

ମିଛ ହୁଏ ସତ୍ୟ ପାପ ହୁଏ ପୁଣ୍ୟ
ଲୋଭୀରୁ ଲୋଭରେ ବଶ
ଦଙ୍ଗା ହେଙ୍ଗାମରେ ବାହାଦୁରି କାଢ଼ି
ନିଜକୁ କରୁଛ ଦାସ ?୪।

ମୁଁ ଅଟେ ଯମୁନା ସମୟ ରୂପରେ
ବୁଲିବୁଲି ପରା ଘୂରେ
ତୁମ କର୍ମ ଦେଖି ଭୋଗାଇ ଚାଲିବି
ଏହାକୁ ଜାଣିଥା' ତୁରେ ।୫।

ଗୁଣାଦୋଳ, ନାହାଳପୁର, ଗୋବିନ୍ଦପୁର, କଟକ



## ଆମର ଢଗଢ଼ମାଳି

ଶ୍ରୀ ଅନ୍ତର୍ଯ୍ୟାମୀ ଲେଙ୍କା

*ମଲୁ ଖୋଜୁଥିଲା କାକର ପାଣି*
*ବଇଦ କହିଲା ପି' ତୋରାଣି*

ମଣିଷ ଅଛନ୍ତି, ସାଥିରେ ରୋଗକୁ ଧରି ଚାଲିଛନ୍ତି ଏବଂ ତା' ପାଖେ ପାଖେ ବଇଦ । ବର୍ତ୍ତମାନକୁ ଡାକ୍ତର ମଧ୍ୟ ଅଛନ୍ତି । ରୋଗୀକୁ ରୋଗ ଭଲ ହେବା ପାଇଁ ଔଷଧ ତ ଦିଆଯାଏ । କଡ଼ାକଡ଼ି ଭାବେ ପଥିରେ ରହିବାକୁ ପଡ଼ିଥାଏ, ଅର୍ଥାତ୍ ଖାଇବା ପିଇବାରେ ସଂଯତ ରହିବାକୁ ପଡ଼ିଥାଏ । ବିଶେଷ କରି ପାଣିକୁ ସିଝାଇ ଥଣ୍ଡା କରି ପିଇବାକୁ ଦିଆଯାଏ । ରୋଗରୁ ମୁକ୍ତ ହୋଇଯାଇଥିଲେ ମଧ୍ୟ ଆଉ କିଛି ଦିନ ପାଇଁ ଔଷଧ ସହ ପଥିରେ ସଂଯମତା ଅବଲମ୍ବନ କରିବାକୁ ପଡ଼ିଥାଏ । ରୋଗୀର ଏହି ଅବସ୍ଥାକୁ 'ମଲୁ' କୁହାଯାଇଥାଏ । ରୋଗ ଭଲ ହୋଇଗଲାଣି; ମାତ୍ର ଶତଭାଗ ହୋଇନାହିଁ । ଏହି ସମୟରେ ମଲୁର ଟିକିଏ ପାଟିସୁଆଦ କରିବାକୁ ଇଚ୍ଛା ହୁଏ । ସିଝା ପାଣି ପିଇ ପିଇ, ପଥି ଖାଇ ଖାଇ ପାଟି ଚିଟା ଧରିଗଲାଣି । ଟିକିଏ କାକର ପାଣି ଅର୍ଥାତ୍ ଥଣ୍ଡା ପାଣି ପାଇଁ ଜିଦ୍ ଧରିଥାଏ । ବଇଦକୁ ନ ପଚାରି କିଛି କରି ବସିବାର ସାହସ କାହାରି ନାହିଁ । ବଇଦ (ଡାକ୍ତର) ଆସି ପରୀକ୍ଷାନିରୀକ୍ଷା କରି ସନ୍ତୋଷ ହୋଇ କହିଦେଲେ, "ତୋରାଣି ପିଇବାକୁ ଦେଲେ କିଛି କ୍ଷତି ନାହିଁ ।" ଆମ ଓଡ଼ିଆଙ୍କର ପ୍ରିୟ ଖାଦ୍ୟ ପଖାଳ ଏତେ ଦିନ ପରେ ପାଟିରେ ବାଜିବ, ଏ କଥା ଭାବି ରୋଗୀ କେତେ ଯେ ଖୁସି ହୋଇଥିବ, ତାହାର ଆଶା ଠାରୁ ବହୁ ଅଧିକ ପାଇବାରେ ।

ଏବେ ତୋରାଣି ପିଇବା କଥା ଲେଖିବାକୁ ଯାଇ ଅଙ୍ଗେ ଲିଭାଇଥିବା ୧୯୪୭ ମସିହାର କଥାଟି ମନେପଡୁଛି– ଘରଠାରୁ ୧୪ କି.ମି ଦୂର ବାଲିକୁଦା ହାଇସ୍କୁଲକୁ ମ୍ୟାଟ୍ରିକ୍ ପାରୀକ୍ଷା ଦେବା ପାଇଁ ଫିସ୍ ଦାଖଲ କରିବାକୁ ନୋଟିସ୍ ପାଇ ମୁଁ ସେଦିନ ଉପରବେଳା ଘରକୁ ବାହାରିଲି । ଖରାଦିନ, ପଶ୍ଚିମ ଦିଗକୁ ଯାଉଥିବାରୁ ସୂର୍ଯ୍ୟକିରଣ ମୋ ମୁହଁ ଉପରେ ପଡୁଥାଏ । ବଡ଼ କ୍ଳାନ୍ତ ଲାଗୁଥିଲେ ବି ୧୪ କି:ମି ବାଟ ପାର୍ ହୋଇ ସନ୍ଧ୍ୟା ପୂର୍ବରୁ ଘରେ ପହଞ୍ଚିବାକୁ ହେବ । ସେଥିରେ ପୁଣି ଦେବୀ ନଦୀର ଅନ୍ତପୁରା ଘାଟ ପାର୍ ହେବାକୁ ପଡ଼ିବ ।

ଗୋଟେ ବଡ଼ ଗାଁ ଭିତର ଦେଇ ଚାଲିଛି । ମନ୍ଦିର ଛକ ପାଖରେ ହାଡ଼ିବନ୍ଧୁ ପ୍ରଧାନଙ୍କୁ ଦେଖିଲି, ଯେ କି ଆମ ସାଥିରେ ପଢ଼େ । ଏହାର ପ୍ରାୟ ବର୍ଷେ ପୂର୍ବରୁ ତା'ର ଆମର ପାଟିତୁଣ୍ଡ ହୋଇ ମୁଁ ତାକୁ ପେଲିଦେଇଥିଲି ଏବଂ ସେହିଦିନଠାରୁ କଥାବାର୍ତ୍ତା ବନ୍ଦ ଥିଲା । ଆଉ ସେହି ଦିନଠାରୁ ସେ ମୋତେ ଡରୁଥିଲା ।

ମୁଁ ତା' ପାଖରେ ଯେମିତି ପହଞ୍ଚିଯାଇଛି, ସେ ମୋ ପାଖକୁ ଧାଇଁଆସି, "ଆରେ ଭାଇ ! ସକାଳୁ ନ ଆସି ଏ ଖରାଟାରେ ଏପରି ଝାଳନାଳ ହୋଇ ଆସିଲୁ କିଆଁ ?" ଏହା କହି ମୋତେ କୁଣ୍ଢାଇ ଧରିଲା ଏବଂ ତା' ଘରକୁ ଟାଣି ଟାଣି ନେଇ ଚାଲିଲା । ପୂର୍ବ କଥା ଭାବି ମୋ ମନରେ ଦୁଃଖ ସହ ଲାଜ ବି ମାଡୁଥାଏ । ସେ ପୁଣି କହିଲା, "ଚାଲେ, ଉଖୁଡ଼ା ଅଛି, ଦୁଧ ବି ଅଛି, ଖାଇବୁ ।" ମୁଁ କହିଲି, "ପାଣି ଗିଲାସେ ହେଲେ ବି ଚଳିବ, କାରଣ

ବହୁତ ବାଟ ମୋତେ ଯିବାକୁ ପଡ଼ିବ ।" ତା' ଘରେ ପହଞ୍ଚିଲୁ । ସେ "ବୋଉ, ବୋଉ ! ଦେଖ୍ ମୋ ସାଙ୍ଗ ଆସିଛି । ଆମ ସ୍କୁଲର ସବୁଠାରୁ ଧନୀ ଘରର ପୁଅ । ଆମେ ତ ଗରିବ, ତେବେ ଯାହା ମୁଢ଼ି, ଉଖୁଡ଼ା କ'ଣ ଅଛି, ଗଣ୍ଡେ ଆଣେ ।" ଇତ୍ୟାଦି କହି ଯେପରି ଭାବ, ଆନ୍ତରିକତା ଦେଖେଇଲା, ମୋତେ ମାଡ଼ି ମାଡ଼ି ପଡୁଥାଏ ।

ତା'ବୋଉକୁ ମୁଁ ଯଥାମାନ୍ୟ କଲି । ସେ ମୋତେ କହିଲେ, "ଏ ଖରାରେ ଶୋଷ ହେଉଥିବ, ପଖାଳଗଣ୍ଡେ ସାଥିରେ ତୋରାଣି ମୁନ୍ଦେ ପିଇଦେଲେ ଭଲଲାଗିବ । ପଖାଳ କଥା ଶୁଣି ମୋ ପାଟିରୁ ଲାଳ ବୋହିବାକୁ ଲାଗିଲାଣି । କୁହାଯାଇଥାଏ, 'ଅନ୍ନମୟ ପିଣ୍ଡ' । ଗଣ୍ଡେ ଭାତ ପେଟରେ ପଡ଼ିଗଲେ ସବୁ ଯେପରି ମିଳିଗଲା ପରି ଲାଗେ । ପୁଣି ପଖାଳ ଭାତ । କିଏ ସହଜରେ ଛାଡ଼େ କି ? କିନ୍ତୁ ହାଡ଼ିବନ୍ଧୁ ସେଥିରେ ବାଧାଦେଉଥାଏ । ବୋଧହୁଏ ତାକୁ ଲାଜ ମାଡୁଥାଏ ମୋତେ ପଖାଳ ଖାଇବାକୁ ଦେଲା ବୋଲି । ସେ ତା' ବୋଉକୁ ଉଖୁଡ଼ା, ଦୁଧ ଦେବାକୁ କହୁଥାଏ ଏବଂ ତା' କଥାକୁ ବଜାୟ ରଖିବା ପାଇଁ ପଖାଳ ସାଥିରେ ଖାଇବା ପାଇଁ କିଛି ଶାଖା କି ଭଜାଭଜି ନାହିଁ ବୋଲି ଜୋର୍ ଦେଇ କହିଲା । ତା'ବୋଉ କହିଲେ– ମୁଁ ମିନିକୁ (ଝିଅ) ଆମ୍ବଚଟଣି କରିବାକୁ କହିଦେଇଛି । କଥା ଆଉ ଆଗକୁ ନ ବଢ଼ାଇବାକୁ ଯାଇ ମୁଁ କହିଲି, "ବୋଉ ଯାହା କହୁଛନ୍ତି, ତା' ହିଁ ହେଉ ।" ଏବେ ମୁଁ ପଖାଳ ଖାଇ ଆମ୍ବଚଟଣି ଲଗାଇ, ପେଟେ ତୋରାଣି ପିଇ ସେମାନଙ୍କଠାରୁ ବିଦାୟ ନେଇ ବାଟ କାଟିଲି । ଏହି ଛୋଟ ଘଟଣାଟି ପରେ ମୁଁ ବଦଳିଯାଇଥିଲି ସବୁ ବେଳ ପାଇଁ ଏବଂ ଏ ପର୍ଯ୍ୟନ୍ତ ମୁଁ ଭଲ ମଣିଷଟିଏ ହେବା ପାଇଁ ଚେଷ୍ଟା କରି ଆସିଛି ।

କେବଳ କାକରପାଣି ଓ ତୋରାଣିକୁ ନେଇ ଏ ଢଗଟି ବୋଲାଯାଇ ଆସୁଅଛି ବା ଏହି କଥାକୁ ନେଇ ସେ ସମୟର କୌଣସି ଜଣେ ବୁଦ୍ଧିମାନ ବ୍ୟକ୍ତି କହିଥିଲେ, ସେପରି କଥା ନୁହେଁ । ଆମ ଜୀବନଯାତ୍ରାର ପ୍ରତ୍ୟେକ ଘଟଣାକୁ ଲକ୍ଷ୍ୟ କରାଯାଇ ଏହାର ଉଦାହରଣ ଦିଆଯାଇ ପାରିବ । ଚାଷ ହେଉ, ବ୍ୟବସାୟ ହେଉ, ଚାକିରି ହେଉ କିମ୍ବା ପାଠପଢ଼ା ହେଉ, ପ୍ରତ୍ୟେକ ଘଟଣା ପାଇଁ ଏହା ପ୍ରଯୁଜ୍ୟ ହୋଇପାରିବ । ଆଶା କରୁଥିବା କିମ୍ବା ହକ୍‌ଦାର ଥିବା ପ୍ରାପ୍ୟଠାରୁ ଯଦି ଅଧିକ ମିଳିଯାଇଥାଏ, ସେପରି ସ୍ଥଳେ ବ୍ୟକ୍ତି ନିଶ୍ଚୟ ଆତ୍ମତୃପ୍ତି ଲାଭ କରିବ । ମ୍ୟାଟ୍ରିକ୍ ପରୀକ୍ଷା ଦେଇଥବା ବାଳକଟି ଫାଷ୍ଟ୍ ଡିଭିଜନ୍‌ରେ ପାଶ୍ କରିବାର ଆଶା ପୋଷଣ କରି ବସିଥିଲା । ଫଳ ବାହାରିବାରେ ସେ ଦେଖିଲା, ତା'ର ନାମ ପ୍ରଥମ ଦଶଜଣଙ୍କ ମଧ୍ୟରେ ଅଛି । ଏପରି ଖବରରେ ନିଜେ ଓ ତା'ର ପରିବାର ବହୁତ ଆନନ୍ଦିତ ହେବାର କଥା । ସେ ମଧ୍ୟ ସାକ୍ଷାତକାରରେ ସେ କଥା କହିବାକୁ ଭୁଲି ନ ଥିଲା ।

ବ୍ୟବସାୟ କ୍ଷେତ୍ରରେ କୌଣସି ଜଣେ ବେପାରୀ ଦର କମ୍ ଥିଲାବେଳେ ମୋଟା ଆକାରରେ ମାଲ୍ କିଣିଦେଇଛି । ଅନେକ ଦିନ ଧରି ଗୋଦାମରେ ପଡ଼ି ରହିଛି, ଦର ଉଠୁନାହିଁ ।



ସାମାନ୍ୟ ଲାଭରେ କିମ୍ବା ମୂଳ ଦରରେ ଖସାଇଦେବାକୁ ଭାବନାରେ ଅଛନ୍ତି । ଏହି ସମୟରେ ତା'ର ଦାମ୍ ହଠାତ୍ ଉଚ୍ଚା ହୋଇଗଲା । ଏପରି ସ୍ଥଳେ ବେପାରୀଙ୍କ ଖୁସି କାହିଁରେ କ'ଣ ।

ବହୁତ ଦିନ ତଳର କଥାଟେ ମନେପଡୁଛି । ସେ ସମୟରେ ଆମର ବିଲରେ ବହୁ ପରିମାଣରେ ଧନିଆ ଅମଳ ହେଉଥିଲା । ଥରେ ବର୍ଷରୁ ଅଧିକା ହୋଇଗଲେ ମଧ୍ୟ ବହୁ ପରିମାଣରେ ଧନିଆ ବିକ୍ରି ନ ହୋଇ ପାରି ଘରେ ପଡ଼ି ରହିଥିଲା । ମୂଷାମାନେ ଧନିଆ ବୋହିନେବାରୁ ମାଟି ତଳେ ତଳେ ଯାଇ କୂଅରେ ବାହାରିଲା । ବଡ଼ଭାଇ ପ୍ରସ୍ତାବ ଦେଲେ ବିଶିଆ ତେଲିକୁ ଡାକି ଦେଇଦେବାକୁ, ଯାହା ଦାମ୍ ଥାଉ ପଛକେ । ବାପା କହିଲେ, "ନାଇଁ, ନାଇଁ ମାସେ ଆଉ ଅପେକ୍ଷା କର । ଭାଡ଼ି ପଇସା ଦେଇଦେବି ।"

ଭାଇ କିଛି ନ କହି ଗଲେ ଭାରି । ମୁଁ ସେଠାରେ ଥିଲି, "ଭାଡ଼ି ପଇସା ଦେଇଦେବି ।" ଏ କଥା ମୁଁ ବୁଝିପାରିଲି ନାହିଁ । ବାପାଙ୍କୁ ପଚାରିଲି । ସେ କହିଲେ, "ବେପାରୀ କପିଳା ତେଲି ଦେଖାହୋଇଥିଲା । ସେ କଟକରୁ ଶୁଣି ଆସିଥିଲା ମାସକ ଭିତରେ ଧନିଆ ଦାମ୍ ବହୁତ ବଢ଼ିଯିବାର ଅଛି । ଏଣୁ ଭାଡ଼ିରେ ଥୁଆ ହୋଇଛି । ଠିକଣା ବେଳ ଆସିଲେ ବିକ୍ରି ହେବ ଏବଂ ସତକୁ ସତ ୧୫/୨୦ ଦିନ ମଧ୍ୟ ଭଲ ଦରରେ ଧନିଆ ବିକ୍ରି ହୋଇଥିଲା ।

ଅତଏବ୍, ସବୁ ଘଟଣା ପାଇଁ ଉପଯୁକ୍ତ ସମୟକୁ ଅନୁଧ୍ୟାନ କରିବା ସହ ଅପେକ୍ଷା କରିବାକୁ ପଡ଼ିବ । ଯେପରି ତୋରାଣି ପିଇବାକୁ ଇଚ୍ଛା ଥିଲେ ରୋଗ ଭଲ ହେବା ପର୍ଯ୍ୟନ୍ତ ଅପେକ୍ଷା କଲା ଭଳି ।

ରାଜାବଗିଚା, କଟକ-୯



# ନିଜେ ପରୀକ୍ଷା କରି ଦେଖ

ଶ୍ରୀ ରବୀନ୍ଦ୍ର ପ୍ରସାଦ ଚାନ୍ଦ

ସହାସ୍ୟ ବଦନେ ମୁକାବିଲା କର
ଯେତେ ବାଧାବିଘ୍ନ ଭୟ
ନିଜଠାରେ ନିଜେ ବିଶ୍ୱାସକୁ ରଖ
ପ୍ରତି କାର୍ଯ୍ୟ ହେବ ଜୟ ।୧।

ହତାଶାକୁ ତଡ଼ ଦକ୍ଷତା ମୁଖରେ
ଜୀବନ ସଜୀବ ହେବ
'ମୁଁ ପାରେ' ଆସୁ ମନର ମଧ୍ୟରୁ
ଖୁସି ଶାନ୍ତି ତୋଳିନେବ ।୨।

କରିପାରିବାର ଦୃଢ଼ତା ରହିଲେ
ସାମର୍ଥ୍ୟ ହୋଇବ ସବୁକିଛି
କୋଇଲା ଭିତରେ ହୀରା ସୃଷ୍ଟି ହୁଏ
ସୌଭାଗ୍ୟକୁ ନେବ ବାଛି ।୩।

କର୍ମଠ ମଣିଷ କର୍ମବୀର ସାଜେ
ତାଳ ମେଳିଗଲା ପରେ
ପାରିବା ପଣିଆ ଚାରିଆଡ଼େ ନାଚେ
ବିଜୟକୁ ହାତଠାରେ ।୪।

ଆତ୍ମ ବିଶ୍ୱାସର ଶ୍ରଦ୍ଧା-ସ୍ନେହ ଭାବ
ଅସଲ ରହସ୍ୟ ଦେଖ
ଆଲୋକର ଗତି ଖୋଲିଦିଏ ରାସ୍ତା
ଅନ୍ଧାର ମାଡ଼େନା ପାଖ ।୫।

ସା/ପୋ: ଆନନ୍ଦପୁର, କେନ୍ଦୁଝର-୭୫୮୦୨୧

# ଚାଷ କରି ଲଭେ ଗରବ

ଶ୍ରୀ ବାସୁଦେବ ଥାଟୋଇ

ହିଡ଼ ଚଲାବାଟେ ଦେଖିଚାହିଁ ଚାଲି ଥରେ ଆସ ଆମ ଗାଆଁକୁ
ଖାଇବ ପଖାଳ-ଦହି-ଶାଗ-ବଡ଼ି କହି ଦେଇଥିବି ମାଆକୁ ।
ଗାଁ ଗଡ଼ିଆରେ ଗାଧୋଇ-ପାଧୋଇ ପିଢ଼ା ଚଟେଇରେ ବସିବ
ରାଣିଗେଞ୍ଜି ଚାଳ ଖଞ୍ଜାଘର ଆମ ଦେଖିଲେ ନିଶ୍ଚୟ ହସିବ ।
ଢିଙ୍କିକୁଟା ଧାନ ଚାଉଳର ଭାତ ଗରମ ଗରମ ଖାଇବ
କାଠ ଚୁଲି ପୋଡ଼ା ରନ୍ଧାର ସୁଆଦ ଆମରି ଗାଆଁରେ ପାଇବ ।
ଏଣ୍ଡୁରି ଆରିସା ମଣ୍ଡା ମୁଆଁପୋଡ଼ ହାତ ହବ ନାହିଁ ଅଇଁଠା
କାଳୀଗାଈ କ୍ଷୀର ଅବା ଗୁଆ ଘିଅ ଖାଇବ ଚକୁଳି ଦିଇଟା ।
ବାଡ଼ିରେ ବନ୍ତଳ-କଦଳୀ ପିଜୁଳି ଭଣ୍ଡା ଲେମ୍ବୁ ଜାମୁ ନଡ଼ିଆ,
ଗଡ଼ିଆର ମାଛ ମୁଗ ବିରି ଡାଲି କୋଳଥ ମାଣ୍ଡିଆ ବଡ଼ିଆ ।
ମାଟି ଚଟାଣରେ ବସିବ ଶୋଇବ ହାତରେ ବିଞ୍ଚଣା ହଲାଇ
ଗାଁ ନଇପଠା ଜୋର ଆମ୍ବତୋଟା ସବୁଆଡ଼େ ଦେବି ବୁଲେଇ ।
ସଂଜରେ ଡିବିରି ଲଣ୍ଠନ ଜଳିବ ଜେଜ ଭାଗବତ ପଢ଼ିଲେ
କିଆ ଗୋହିରିରୁ ହୁକେ ହୋ ଡାକ ଶୁଭୁଥିବ ରାତି ବଢ଼ିଲେ ।



ଗପେଇ ବୁଢ଼ୀର ଗପକୁହା ନିଶା ଦେଖିବ ଗଲେ ସେ ଜାଗାକୁ
ପିଲାଙ୍କୁ ଗପରେ ଅନ୍ଧାର ରାତିରେ ଦେଖାଏ କତର ବଘା'କୁ ।
ଘାସ ପତରରେ କାକର ଦେଖିବ ଗାଁ ଜହ୍ନ ଭାରି ନିଜର
ଛିଟ ପ୍ରଜାପତି ବିଲବଣ ଫୁଲ ସବୁଠି ଲାଗିବ ନଜର ।
ସୂରୁଯ ଉଦୟ ଅସ୍ତଗାମୀ- ରୂପ ପକ୍ଷୀଙ୍କର ଗୀତ ଗାନକୁ
ଚିତାପକା କାନ୍ଥ ଲିପାପୋଛା ଖଳା ଦୋହଲାଇ ଦବ ମନକୁ ।
କାଳିଆ କସରା ବଳଦ ଆମର ଶଗଡ଼ ଲଙ୍ଗଳ ପାଇବ
ମାଟି ମାଠିଆର ସଜ କଢ଼ା ପାଣି ଶୋଷ ହେଲେ ଢାଳି ପିଇବ ।
କେତେ ଯାନି-ଯାତ ଗାଁରେ ଆମର ଦୁର୍ଗା ରଥ ଦୋଳ ପରବ
ସବୁଠାରୁ ବଡ଼ ଆମ ଗାଁ ଚାଷୀ ଚାଷ କରି ଲଭେ ଗରବ ।
ଗାଆଁରେ ପଶିଲେ ଗ୍ରାମ ଦେବତୀଙ୍କୁ ଯାଇଥିବ ହାତ ଯୋଡ଼ିକି
ଫେରିଲା ବେଳକୁ ପାଦ ବଢ଼ିବନି ଯିବା ପାଇଁ ଗାଁ ଛାଡ଼ିକି ।

ଭାରତୀୟ ଜୀବନ ବୀମା ନିଗମ, ଶିଖରପୁର ଶାଖା (୩), କଟକ



# ଅମରନାଥ ଯାତ୍ରା

ଶ୍ରୀ ଅଜିତାନନ୍ଦ ଗୋସ୍ୱାମୀ

ଅମରନାଥ ଧାମ ହିନ୍ଦୁମାନଙ୍କର ଏକ ପ୍ରସିଦ୍ଧ ତୀର୍ଥସ୍ଥାନ । ଏହା ଦ୍ୱାଦଶ ଜ୍ୟୋତିର୍ଲିଙ୍ଗମାନଙ୍କ ମଧ୍ୟରେ ଅନ୍ୟତମ । ଏହା ସମୁଦ୍ର ପତନଠାରୁ ୧୩,୫୦୦ ଫୁଟ ଉଚ୍ଚରେ ଅବସ୍ଥିତ । ଶ୍ରୀନଗରଠାରୁ ୧୪୨ କି.ମି ଦୂରରେ ଥିବା ଅମରଗଙ୍ଗା ଉପତ୍ୟକାରେ ତୁଷାରହୀନ ଅମରନାଥ ଗୁମ୍ଫାରେ ଅମରନାଥ ତୁଷାର ଲିଙ୍ଗ ବିଦ୍ୟମାନ ।

ଉକ୍ତ ଗୁମ୍ଫାର ଲମ୍ବ- ୧୫୦ଫୁଟ୍, ପ୍ରସ୍ଥ- ୯୦ ଫୁଟ୍ ଓ ଗଭୀରତା- ୧୫ ଫୁଟ୍ । ପୂର୍ଣ୍ଣିମା ଦିନ ପୂର୍ଣ୍ଣପ୍ରାପ୍ତ ତୁଷାର ଅମରନାଥ ଲିଙ୍ଗଙ୍କର ଉଚ୍ଚତା- ୨ ଫୁଟ୍ । ଏହାଙ୍କର ଗଠନ ଅର୍ଦ୍ଧବୃତ୍ତାକାର । ତୁଷାର ଲିଙ୍ଗ ଶୁକ୍ଲପକ୍ଷ ପ୍ରତିପଦାରେ ଦୃଶ୍ୟ ହୁଅନ୍ତି ଓ କ୍ରମଶଃ ବୃଦ୍ଧି ପାଇ ପୂର୍ଣ୍ଣିମା ଦିନ ପୂର୍ଣ୍ଣପ୍ରାପ୍ତ ହୁଅନ୍ତି । କୃଷ୍ଣପକ୍ଷରେ ଏହା କ୍ରମଶଃ ହ୍ରାସ ପାଇ ଅମାବାସ୍ୟାରେ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇଯାଆନ୍ତି । ଏହା ପ୍ରକୃତିର ଶ୍ରେଷ୍ଠଦାନ, ଯାହାକି ପୃଥିବୀରେ ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । କାଶ୍ମୀର ରାଜବଂଶରେ ଅମରେଶ୍ୱର ଯାତ୍ରା ବା ଅମରନାଥ ଯାତ୍ରାର ସମ୍ପୂର୍ଣ୍ଣ ବିବରଣୀ ରହିଛି । ଅମରନାଥ ଯାତ୍ରା ଅଷ୍ଟାଦଶ ଶତାବ୍ଦୀରୁ ହୋଇଆସୁଅଛି । ଏହା ଆଷାଢ଼ ଶୁକ୍ଲପକ୍ଷ ପଞ୍ଚମୀଠାରୁ ଆରମ୍ଭ ହୁଏ । ଶ୍ରାବଣ ପୂର୍ଣ୍ଣମା ଦିନ ରାତିରେ ଅସଂଖ୍ୟ ଭକ୍ତଙ୍କର ସମାଗମ ହୁଏ । ଜୀବନକୁ ବିପଦାପନ୍ନ କରି ବହୁ ସଂଖ୍ୟାରେ ଭକ୍ତ ପର୍ବତର ଶିଖର ଦେଶରେ ଆସି ପ୍ରଭୁଙ୍କର ଦର୍ଶନ ଲାଭ କରିଥାନ୍ତି ।

ଅମରନାଥ ପୀଠକୁ ଆସିବାକୁ କାଶ୍ମୀରର ପହେଲ ଗାଁ'ଠାରୁ ଯାତ୍ରା ଆରମ୍ଭ କରାଯାଏ । ହିମାଳୟର ପାଦଦେଶରେ ଥିବା ପହେଲ ଗାଁ ଲମ୍ବୋଦ୍ରୀ ଓ ଶେଷନାଗ ନଦୀଦ୍ୱୟର ସଙ୍ଗମସ୍ଥଳରେ ଅବସ୍ଥିତ । ଯାତ୍ରୀମାନେ ଏହି ସଙ୍ଗମସ୍ଥଳରେ ସ୍ନାନ କରି ଯାତ୍ରା ଆରମ୍ଭ କରନ୍ତି । ପଞ୍ଚତମୀଠାରୁ ଅମରନାଥ ଗୁମ୍ଫା ମାତ୍ର ୬ କି.ମି. ଦୂରରେ ଅବସ୍ଥିତ । ପଞ୍ଚତମୀଠାରୁ ଅମରନାଥ ଗୁମ୍ଫା ପର୍ଯ୍ୟନ୍ତ ଯିବା ପଥରେ କଠିନ ବରଫ ଉପର ଦେଇ ଯିବାକୁ ପଡ଼ିଥାଏ । ଅନ୍ୟ ଏକ ପଥ ଅଛି ପଞ୍ଚତମୀଠାରୁ ଅମରନାଥ ଗୁମ୍ଫାକୁ ଆସିବାକୁ । ଏହି ପଥ ଦେଇ ଆସିଲେ ଗୋଟିଏ ଦିନରେ ଅମରନାଥ ଦର୍ଶନ ହୋଇପାରିବ, ମାତ୍ର ଏହା ଗତାନୁଗତିକ ପରମ୍ପରା ପଥ ନୁହେଁ ।

ପଞ୍ଚତମୀରେ ପହଞ୍ଚିଲେ ସିନ୍ଧୁନଦୀର ଉତ୍ପତ୍ତିସ୍ଥଳରେ ଯାତ୍ରୀମାନେ ପହଞ୍ଚିଥା'ନ୍ତି । ପଞ୍ଚତମୀର ସମତଳ ଅଞ୍ଚଳରେ ଅନେକଗୁଡ଼ିଏ ସୁରମ୍ୟ ଶିବିର ରହିଛି । ଏଠାରେ ମାଗଣାରେ ଯାତ୍ରୀମାନେ ରହିବା ଓ ଖାଇବାର ବନ୍ଦୋବସ୍ତ ଅଛି । ଆଉ ମଧ୍ୟ ବିରାଟ ଓଜନିଆ ଗଣ୍ଠିଲିପତ୍ର ଏଠାରେ ନିରାପଦରେ

ରଖିବାର ସୁବିଧା ଅଛି । କେତେକ ପଞ୍ଜାବୀ ଭକ୍ତଙ୍କ ତରଫରୁ ଉକ୍ତ ଶିବିରଗୁଡ଼ିକର ସୁବିଧା କରାଯାଇଛି ।

ପଞ୍ଚତମୀରେ ମୁସଲମାନ ସମ୍ପ୍ରଦାୟର ଲୋକେ ମେଷମାନଙ୍କୁ ଚରାନ୍ତି । ଏକ ଲୋକକଥା ଅଛି– ଜଣେ ମେଷପାଳକ ତାଙ୍କର ହଜିଯାଇଥିବା ମେଷକୁ ଖୋଜିବାକୁ ଯାଇ ଏକ ତୀବ୍ର ଉଜ୍ଜ୍ୱଳ ତୁଷାର ଲିଙ୍ଗ ଦେଖିଲେ । ତତ୍କ୍ଷଣାତ୍ ପାହାଡ଼ ତଳେ ବସିଥିବା ଋଷିମାନଙ୍କୁ ଖବରଦେଲେ । ସେବେଠାରୁ ଅମରନାଥ ତୀର୍ଥଯାତ୍ରା ଆରମ୍ଭ ହେଲା । ଭକ୍ତମାନେ ଦେଉଥିବା ଦାନର ଏକତୃତୀୟାଂଶ ଦାନ 'ବାଟକଟର' ଭାବେ ଉକ୍ତ ଖବର ଦେଇଥିବା ମୁସଲମାନ ମେଷପାଳମାନଙ୍କ ବଂଶଧରଙ୍କୁ ଏବେ ମଧ୍ୟ ଦିଆଯାଏ ।

ଏଠାରେ ଥିବା ମୁସଲମାନ ମେଷପାଳକଙ୍କର ବିନା ସାହାଯ୍ୟରେ ଯାତ୍ରା କରିବା ସମ୍ଭବ ନୁହେଁ । ସେମାନେ ସେମାନଙ୍କର ଟଟୁଘୋଡ଼ାରେ ବସାଇ ଯାତ୍ରୀମାନଙ୍କୁ ନେବାଆଣିବା କରିଥା'ନ୍ତି । ମୁସଲମାନ ବାଳକମାନେ ରାସ୍ତାସାରା ହୋଷ (ବାଟଛାଡ଼) ଉଚ୍ଚାରଣ କରି ଯାଉଥିବାର ଶୁଣାଯାଏ । ସେମାନେ ପୂଜାସାମଗ୍ରୀ ମଧ୍ୟ ଯୋଗାଇବା ସହ ଅପରିଷ୍କାର ରାସ୍ତାଗୁଡ଼ିକୁ ପରିଷ୍କାର କରିଥା'ନ୍ତି ।



୧୦୦୦ ଫୁଟ୍ ଉଚ୍ଚତାକୁ ଉଠି ପୁଣି ତଳକୁ ଗଡ଼ିବା କଷ୍ଟଦାୟକ ବୋଲି ସରକାର ରେଲିଂ ବାଡ଼ାର ବ୍ୟବସ୍ଥା କରିଛନ୍ତି । ବୃଦ୍ଧ ଓ ଦୁର୍ବଳମାନେ ସୁବିଧାରେ ଏହାର ସାହାଯ୍ୟ ନେଇଥା'ନ୍ତି ।

ଅମରନାଥଙ୍କ ଦର୍ଶନ ପୂର୍ବରୁ ଭକ୍ତମାନେ ଅମର ଗଙ୍ଗାଜଳରେ ଦ୍ୱିତୀୟବାର ବୁଡ଼ (ସ୍ନାନ) ପକାନ୍ତି । ଉପରିଭାଗରେ ଥିବା ଅମର ଗଙ୍ଗାଜଳ ବୁନ୍ଦା ବୁନ୍ଦା ହୋଇ ଗୁମ୍ଫା ମଧ୍ୟରେ ପଡ଼ି ଗୁମ୍ଫାଟିକୁ ଥଣ୍ଡା ରଖିଥାଏ । ଗୁମ୍ଫାଟି ଦକ୍ଷିଣ ଦିଗକୁ ଥିବାରୁ ତୁଷାରଲିଙ୍ଗ ଉପରେ ସୂର୍ଯ୍ୟକିରଣ ପଡ଼େନାହିଁ । ଏଣୁ ଗ୍ରୀଷ୍ମଋତୁରେ ତୁଷାରଲିଙ୍ଗ ତରଳେ ନାହିଁ । ଭକ୍ତମାନେ ଅମରନାଥ ଗୁମ୍ଫା ମଧ୍ୟକୁ ଯାଇ ଅମରନାଥ ତୁଷାର ଲିଙ୍ଗକୁ ଦର୍ଶନ କରନ୍ତି । ଦର୍ଶନ କରି ଭକ୍ତମାନେ ତନ୍ମୟ ହୋଇଯାଆନ୍ତି ।

ଭଗବାନ ଅମରନାଥ ତୁଷାରଲିଙ୍ଗର ଦୁଇ ପାର୍ଶ୍ୱରେ ପ୍ରତ୍ୟେକପାର୍ଶ୍ୱରେ ଗୋଟିଏ କରି ଦୁଇଟି ଶଙ୍ଖ ଆକୃତିର ଲିଙ୍ଗ ଅଛନ୍ତି । ଏମାନେ ପାର୍ବତୀ ଓ ଗଣେଶ ଭାବେ ଖ୍ୟାତ । ଗଣେଶଙ୍କ ନିକଟରେ ଗୋଟିଏ ଛୋଟ କୁଣ୍ଡ ଅଛି । କୁଣ୍ଡରେ ଥିବା ଅମରଜଳକୁ ଭକ୍ତମାନେ ଅଭିଷେକ ତୀର୍ଥମ୍ ଭାବେ ସାଙ୍ଗରେ ଆଣିଥା'ନ୍ତି । ଗଣେଶ ଓ କୁଣ୍ଡ ମଧ୍ୟରେ ଧୂଳି ପଡ଼େ । ଏହାକୁ ଭକ୍ତମାନେ ମଥାରେ ଲଗାଇବା ସହ ସାଙ୍ଗରେ ଆଣିଥା'ନ୍ତି । ଉକ୍ତ ଧୂଳିକୁ ପବିତ୍ର ବିଭୂତି ଭାବେ ଗ୍ରହଣ କରାଯାଏ ।

କାଶ୍ମୀର ରାଜବଂଶ ତରଫରୁ 'ନୀଳମାତା' ପୁରାଣରେ ଅମରନାଥଙ୍କ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି ।

ଅଚ୍ୟୁତାନନ୍ଦ ମାର୍ଗ, କଟକ- ୧୨



# ସର୍ବଂସହା

ଶ୍ରୀ ପବିତ୍ର କବି

ଧରଣୀକୁ ଆମ ତପତ କରାଇ
ଫଗୁଣ ନିଦାଘ କାଳ
କଲବଲ କେତେ ହୁଅନ୍ତି ପ୍ରାଣୀଏ
ଲୁହେ ଆଖି ଛଳଛଳ ।୧।
ଝରଝର ଝର ବରଷା ଝରଇ
ମାଟିକୁ ଦିଏ ଥରାଇ
କେବେ ସେ ଧରଣୀ କହିଛି କି କିଛି
ଖରା, ବରଷାକୁ ଚାହିଁ ।୨।
ଧରିଛି ତା' କୋଳେ କୋଟିକୋଟି ଜୀବ
ତରୁଲତା ବନରାଜି
ଖେଳୁଅଛି ସିନ୍ଧୁ ତା' ବୁକୁରେ ନିତି
ସ୍ତୁତି ଗାଉଛି ଗରଜି ।୩।
ଖଣି ଖାଦାନରେ ବିଦୀର୍ଣ୍ଣ କରିଛି
ମଣିଷ ତା' ବୁକୁ ଖୋଳି
କେବେ ସେ ଧରଣୀ ପ୍ରତିବାଦ କରି
ଦେଇନାହିଁ ପଦେ ଗାଳି ।୪।
ମଣିଷ କରିଛି କେତେ କୋଠାବାଡ଼ି
କଳକାରଖାନା ମାନ
ସେ ସବୁ ଭାରକୁ ସହିଛି ଧରଣୀ
ନାହିଁ ମାନ ଅଭିମାନ ।୫।
ଅଳିଝଳି ଯେତେ ସହୁଛି ଧରଣୀ
ଅଟଳ କରି ତା' ଛାତି
ମାଆ ସେ ଆମର ସକଳେ କହନ୍ତି
ସର୍ବସହା ବସୁମତୀ ।୬।
ସହିଷ୍ଣୁତା ଗୁଣ ଶିଖରେ ପିଲାଏ
ହୋଇବ ମହତ ଜନ
ଅସହିଷ୍ଣୁ ସିନା ଅଧୋଗତି ଲଭେ
ସମାଜେ ହୁଏ ଦୁର୍ଜନ ।୭।

ପ୍ଲଟ୍ ନଂ. ଏସ୍.ଆର୍-୭, ଲେନ୍ ନଂ-୪, ପାଣ୍ଡବନଗର, ବଡ଼ଗଡ଼ ବ୍ରିଟ୍ କଲୋନୀ, ଭୁବନେଶ୍ୱର-୭୫୧୦୧୮

---



# ଧନ୍ଦା

ରୋଜାଲିନ୍ ସାହୁ

ଶବ୍ଦଟି ଗଠିତ ଚାରୋଟି ଅକ୍ଷର ନେଇ
ଜ୍ଞାନର ଦେବୀଙ୍କୁ ଦିଏ ବୁଝାଇ ।
ପ୍ରଥମ ଦ୍ୱିତୀୟ ଦିଅ ମିଶାଇ
କ୍ଷୀରର ଉପରେ ସିଏ ରୁହଇ ।
ଚତୁର୍ଥ ଦ୍ୱିତୀୟ ଯୋଡ଼ି ଦେଖିବ
ଧନୁ ପାଖେ ପାଖେ ତାକୁ ପାଇବ ।
ତୃତୀୟ ଦ୍ୱିତୀୟ ଯେବେ ମିଶିବ
ତାଳ ଲୟ ପାଖେ ସିଏ ରହିବ ।
ଏହି ନାମଟିକୁ କହିବ ଯିଏ
ବୁଦ୍ଧିଆ ବିଦ୍ୟାର୍ଥୀ ହୋଇବ ସିଏ ।

ପ୍ରାକ୍ଟିସିଂ ବାଳିକା ଉଚ୍ଚ ବିଦ୍ୟାଳୟ, ଫକୀରପୁର

*(ଉତ୍ତର ୫୦ ପୃଷ୍ଠାରେ)*



ଦଶଭୁଜାଙ୍କର ଆଗମନର ପ୍ରତୀକ୍ଷାରେ ସହରସବୁ ସରଗରମ । ବିଶେଷ କରି କଲିକତାରେ ଦଶହରା ବଡ଼ ପର୍ବ । ସମସ୍ତେ ସେଠାରେ ଚଳଚଞ୍ଚଳ । ଧୁମ୍‌ଧାମ୍, ବାଜା, ରୋଷଣି, ଏବଂ ଦୋକାନରେ ଅସମ୍ଭବ ଭିଡ଼ । ଆନନ୍ଦର ଲହରି ଢେଉ ଭାଙ୍ଗୁଛି କଲିକତାରେ । ଯାହା ମୁହଁକୁ ଚାହିଁଲେ ଦେଖିବେ କଳକଳ, ଛଳଛଳ । କାରଣ ମା’ ଆସୁଛନ୍ତି ସମସ୍ତ ଆଶାୟୀ ଜନତାଙ୍କର ଆଶାଭରସାକୁ ପୂରଣ କରିବା ପାଇଁ ।

ଯିଏ ପାରିଲା ସଜେଇବାରେ ବାହାଦୁରି ନେବାକୁ ଆଗଭର ।

କଟକ, ଭୁବନେଶ୍ୱର ଉଠୁଛି, ପଡୁଛି । ଦଶପଲ୍ଲୀ ଥରେ ଯାଇଥିଲି । ରାବଣ ପୋଡ଼ି ଦେଖିଛି । କି ଆନନ୍ଦ ଅସୁରର ବିନାଶରେ ! ବିରାଟ ଚେହେରା ସହିତ ରାବଣର ଭୟଙ୍କର ରୂପ ପୋଡ଼ି, ଜଳି ଛାରଖାର । ସମ୍ବଲପୁରରେ ବି ଦଶହରା ଦେଖିଛି; ମାତ୍ର ଏମିତି ଘମାଘୋଟିଆ ସଜାସଜି କଟକ, ଭୁବନେଶ୍ୱର ଭଳି ସେଠାରେ ନାହିଁ ।

ବିଭିନ୍ନ ବଜାରରେ ବିଭିନ୍ନ ପ୍ରକାରର ମେଢ଼ । କାହାର ଚାନ୍ଦି ତ କାହାର ସୁନା, କାହାର ଶିବ, ପାର୍ବତୀ; କାହାର ମା’ ଦୁର୍ଗାଙ୍କର ମେଢ଼ରେ ସୁନ୍ଦର ଜରି ଚିକ୍‌ଚିକ୍ କରୁଛି । ତୋରଣ ହୋଇଛି ଯାହାକୁ ଯେତେ । କେତେ ପ୍ରକାରର । ଆଇଫେଲ୍ ଟାୱାର୍, ତାଜମହଲ, ରାଜସ୍ଥାନ ପ୍ୟାଲେସ୍ ଇତ୍ୟାଦି ଢଙ୍ଗରେ ସଜାଯାଇଛି । ଆଉ ଏଥିପାଇଁ ଖର୍ଚ୍ଚ ଏତେ ଯେ ତା’ର କଳନା ନାହିଁ । ଲକ୍ଷ ଲକ୍ଷ କୋଟି କୋଟି ଟଂକା ଖର୍ଚ୍ଚ ହୋଇଯାଇଛି । କେମିତି ଆସୁଛି ? ଚାନ୍ଦା, ଭେଦା କରି ଆଣୁଛନ୍ତି । ପ୍ରତି ବଜାରର ସାହିମୁରବିମାନଙ୍କର ଫଟୋ, ବିବରଣୀ ପ୍ରତିଦିନ ସମାଜରେ ବାହାରୁଛି । ଲୋକେ ଦେଖି କୃତକୃତ୍ୟ ।

ଧନୀଲୋକମାନେ କେତେ ଟଂକା ଦେଇଛନ୍ତି ! ଭାବିଲେ ଆଖି ଖୋସି ହୋଇ ହୋଇଯିବ ! ମେଲୋଡିର ଶବ୍ଦ, ଶବ୍ଦଭେଦୀ ବାଣର ପ୍ରାବଲ୍ୟ ଶବ୍ଦ ପ୍ରଦୂଷଣକୁ ଉପହାସ କରୁଛି ସତେଯେମିତି !

ଆନନ୍ଦଉତ୍ସବ କରିବାକୁ କାହାକୁ ମନା ନାହିଁ । ଯିଏ ଯାହା ମନଇଚ୍ଛା ଆନନ୍ଦ କରିବ । ଏଇ ତ ଦିନ ଆନନ୍ଦ ଉତ୍ସବର ! ପିଲାଏ ତ ଏଇ ଉତ୍ସବକୁ ଟାକି ରହିଥାନ୍ତି !

ମୋର କହିବା କଥା– ଏ ତୋରଣ ଆଉ ମା’ଙ୍କର ଭସାଣି ଉତ୍ସବରେ ଅପର୍ଯ୍ୟାପ୍ତ ଖର୍ଚ୍ଚକୁ ରୋକିବା ଆବଶ୍ୟକ ନୁହେଁ କି ? ଶବ୍ଦ ପ୍ରଦୂଷଣ ପ୍ରତି ଦୃଷ୍ଟିଦେବା ଜରୁରୀ ନୁହେଁ ?

ଆମ ରାଜ୍ୟରେ ଆର୍ଥିକ ସ୍ୱଚ୍ଛଳ ବ୍ୟକ୍ତିଙ୍କର ସଂଖ୍ୟା କମ୍ ବୋଲି ମୋର ଧାରଣା । ଆର୍ଥିକ ଅସ୍ୱଚ୍ଛଳ ବା ଗରିବଶ୍ରେଣୀ ଅଧିକ । ସେମାନଙ୍କର କଥା ଏହି ସମୟରେ ଚିନ୍ତା କରି ଆମେ ଖର୍ଚ୍ଚ କରିବାଟା ସମୀଚୀନ ନୁହେଁ କି ?

ସେହି ଅତ୍ୟୁଚ୍ଚ ତୋରଣ ତଳେ ଆମେ ଦେଖୁ କେତେ ଦରିଦ୍ର, ଅସହାୟ ବ୍ୟକ୍ତି, ଛୋଟ ପିଲା ଉପରକୁ ମୁଣ୍ଡ ଉଠାଇ ସେ ତୋରଣକୁ ଚାହାଁନ୍ତି । ଆମେ ଗାଡ଼ିରେ ବସି ସେଇବାଟେ ଯାଉ ସାଜସଜ୍ଜା ଦେଖିବା ପାଇଁ । ସେମାନେ ଭାବୁ ନ ଥିବେ, “ଆହା ! ଆମକୁ ହେଲେ ଏଥିରୁ କିଛି ପଇସା ଦିଅନ୍ତେ, ଆମ ପିଲାମାନେ ଖାଇପିଇ ସୁସ୍ଥ ହୁଅନ୍ତେ । ଆମ ସ୍ୱାମୀ, ମା’ ବାପା ରୋଗରୁ ମୁକ୍ତ ହୁଅନ୍ତେ । ଭାବୁ ନ ଥିବେ ସେମାନେ– ମୋ ପିଲାଟା ପାଠ ପଢ଼ିପାରୁନି, ସ୍କୁଲ ଜାମା ତିଆରି ହୋଇପାରୁନି । ଦିଅନ୍ତେ କି କିଛି ଏଥିରୁ ଏ ବାବୁମାନେ ! ଝିଅର ବାହାଘର

ହୋଇପାରୁନି– ଏମିତି କେତେ କ'ଣ ଭାବୁଥିବେ ।

ସେସବୁ ଭାବନା କ'ଣ ଭୁଲ୍ ସେମାନଙ୍କର ! ଏହା ହିଁ ଆମ ସମାଜର ଚିନ୍ତାଧାରା ! ଏତେ ଖର୍ଚ୍ଚ ଏ ଦୁର୍ଗା, ଶିବ ମୂର୍ତ୍ତି ପାଇଁ, ମେଲୋଡି ପାଇଁ ନ କରି ଚାନ୍ଦା, ଭେଦାର ପାଣ୍ଠିକୁ ଗରିବ ଲୋକଙ୍କ ପାଇଁ ଦାନ କରିବାର ଚିନ୍ତାଧାରା ଆମ ମୁଣ୍ଡରେ କିଏ ଭର୍ତ୍ତି କରିବ ? ଆମେମାନେ ନିଜେ ତ ଭାବିବା ଆବଶ୍ୟକ ! ମା' ଦୁର୍ଗା ଆମମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ– ଏତିକି ପ୍ରାର୍ଥନା ।

**-- ଅନସୂୟା ନନ୍ଦ**



ଇସ୍ରାଏଲ୍‌ର ପ୍ରଧାନମନ୍ତ୍ରୀ ନେତାନ୍ୟାହୁଙ୍କ ପୁତ୍ର ନିଜ ଦେଶର ରକ୍ଷା ପାଇଁ ସୈନ୍ୟବିଭାଗରେ ଚାକିରି କରନ୍ତି ।



ରୁଷିଆ ରାଷ୍ଟ୍ରପତି ଭ୍ଲାଡିମିର୍ ପୁଟିନ୍ ନିଜ କାର୍‌ରେ ପେଟ୍ରୋଲ ପକାଉଛନ୍ତି ।



କାନାଡାର ପ୍ରଧାନମନ୍ତ୍ରୀ ଜଷ୍ଟିନ୍ ଟ୍ରୁଡୁ ତାଙ୍କ ପରିବାରବର୍ଗଙ୍କ ସହ ଦେହରକ୍ଷୀଙ୍କ ବିନା ନିଜ ପିଲାଙ୍କୁ କାଖେଇ ୱାସିଂଟନ୍‌ର ରାସ୍ତାରେ ଯିବାର ଦୃଶ୍ୟ ।



ଆମେରିକାର ପୂର୍ବତନ ରାଷ୍ଟ୍ରମୁଖ୍ୟ ଓବାମା ଏବଂ ତାଙ୍କ ପରିବାରର ସଦସ୍ୟଗଣ ଗୀର୍ଜାରେ ପ୍ରାର୍ଥନା କଲାବେଳେ ଆଗଧାଡ଼ିରେ ଜାଗା ନ ପାଇ ପଛଧାଡ଼ିରେ ମଧ୍ୟ ରହନ୍ତି ।



**କିନ୍ତୁ...** ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଦେବଗୌଡ଼ଙ୍କ ଗାଡ଼ି ବାଙ୍ଗାଲୋରର ରେଲ୍‌ଷ୍ଟେସନ୍‌ର ପ୍ଲାଟ୍‌ଫର୍ମରେ ଆସି ଟ୍ରେନ୍ ପାଖେ ପହଞ୍ଚିଥିବାର ଦୃଶ୍ୟ ।

ଏ ସବୁକୁ ଦେଖି ଦକ୍ଷିଣ-ପୂର୍ବ ଏସିଆ ଦେଶଗୁଡ଼ିକର ନେତାମାନଙ୍କର ଏଥିରୁ କିଛି ଶିଖିବାର ଅଛି କି ?

ସଂଗ୍ରହ- **ସତ୍ୟନାରାୟଣ ମହାପାତ୍ର**

# ଭୁବନେଶ୍ୱର ମହାନଗର ନିଗମ,
# ଭୁବନେଶ୍ୱର

## ସ୍ୱାୟତ୍ତ ଶାସନ ଦିବସ - ୨୦୧୭
## ପାଳନ ଅବସରରେ ଭୁବନେଶ୍ୱର ମହାନଗର
## ନିଗମାଞ୍ଚଳବାସୀଙ୍କୁ ଅଭିନନ୍ଦନ

ଆସନ୍ତୁ ସହରର ବିକାଶଧାରାରେ ସାମିଲ ହେବା

ଏବଂ ଏକ ଉନ୍ନତ ସହର ଗଢ଼ିତୋଳିବା

| **ଡା. କ୍ରିଷନ୍ କୁମାର** | **ଶ୍ରୀମତୀ କେ. ଶାନ୍ତି** | **ଶ୍ରୀଯୁକ୍ତ ଅନନ୍ତ ନାରାୟଣ ଜେନା** |
|---|---|---|
| *କମିଶନର* | *ଡେପୁଟି ମେୟର* | *ମେୟର* |

**ଏବଂ**

**ସମସ୍ତ କର୍ପୋରେଟର ଓ ବି.ଏମ୍.ସି. ପରିବାର**

## ଭାଗିଦାରୀ ମାଧ୍ୟମରେ ପ୍ରଗତି -
## ଏକ ସୁନ୍ଦର ଭୁବନେଶ୍ୱର ପାଇଁ

# 'ଜାତି'ରେ ପରିଚିତ ହୁଅନାହିଁ

ଡକ୍ଟର ଉଦ୍ଧବ ଚରଣ ନାୟକ



ଆନନ୍ଦ ଭଗବାନବୁଦ୍ଧଙ୍କର ପ୍ରିୟ ଶିଷ୍ୟମାନଙ୍କ ଭିତରୁ ଜଣେ । ଆନନ୍ଦ ବଡ଼ ଉଦାର, ଦୟାଳୁ ଓ ପରୋପକାରୀ । ତାଙ୍କଠାରେ ପୂରି ରହିଥାଏ ମାନବିକତାର ସବୁ ଗୁଣ । ସେ ସବୁବେଳେ ସମସ୍ତଙ୍କୁ ସ୍ନେହ, ଶ୍ରଦ୍ଧା, ଭକ୍ତି ଓ ଆଦର କରନ୍ତି । ତାଙ୍କ ଆଖିରୁ କେହି ବଡ଼ କି ସାନ ନ ଥିଲେ । ସଭିଏଁ ସମାନ । ଆନନ୍ଦ ଜଣେ ବୌଦ୍ଧଭିକ୍ଷୁ । ବୌଦ୍ଧଭିକ୍ଷୁମାନେ ବୌଦ୍ଧ ସନ୍ନ୍ୟାସୀ ।

ଦିନକର କଥା– ସେଦିନ ଆନନ୍ଦ ଗାଁ ବୁଲିବା ପାଇଁ ବାହାରିପଡ଼ିଲେ । ବାଟରେ ଯାଉଛନ୍ତି, ତାଙ୍କୁ ଭୀଷଣ ଶୋଷ ହେଲା । ସେ ଚାରିଆଡ଼କୁ ଚାହିଁଲେ, ହେଲେ ପାଣି ଟୋପାଏ ପାଇଲେ ନାହିଁ । ଶେଷରେ ସେ ଛଟପଟ । ସତେଯେମିତି ତାଙ୍କ ଜୀବନ ଚାଲିଯିବ ! କିଛି ଦୂରକୁ ତାଙ୍କର ନଜର ପଡ଼ିଲା । ସେଠାରେ ଗୋଟିଏ କୂଅ ଥିବାର ସେ ଜାଣିପାରିଲେ । ପ୍ରାଣ ବିକଳରେ ବହୁତ ଆଶା ନେଇ ସେ କୂଅ ପାଖରେ ଯାଇ ପହଞ୍ଚିଲେ । ଦେଖିଲେ ଗୋଟିଏ ବାଳିକା କୂଅରୁ ପାଣି କାଢ଼ି ଗୋଟିଏ କଳସୀରେ ଭରୁଛି । ଆନନ୍ଦ, ଆନନ୍ଦ ମନରେ ସେଇ ଝିଅ ପାଖକୁ ଗଲେ । କହିଲେ, "ଭଉଣୀ ! ମୁଁ ବହୁତ ଦୂରରୁ ଆସିଲିଣି । ମୋତେ ଭୀଷଣ ଶୋଷ । ପାଣି ମୁନ୍ଦେ ମୋତେ ପିଇବାକୁ ଦିଅ ।"

ଭିକ୍ଷୁକଙ୍କର କଥା ଶୁଣି ବାଳିକାଟି ଥରିଉଠିଲା । କାରଣ ସେ ହେଉଛି ଗୋଟିଏ ଚଣ୍ଡାଳ କନ୍ୟା । ଅଛୁଆଁ ଜାତିରେ ତା'ର ଜନ୍ମ । ସେ ଭଲ କରି ଜାଣେ କୌଣସି ଉଚ୍ଚ ଜାତିର ଲୋକ ସେମାନଙ୍କ ହାତରୁ ପାଣି ପିଅନ୍ତି ନାହିଁ ବୋଲି; ହେଲେ ସେ ଏବେ କରିବ କ'ଣ ? ବାଳିକାଟି ଖାଲି ନୀରବରେ ତଳକୁ ମୁହଁ ପୋତି ଠିଆ ହୋଇ ରହିଲା ।

ଆନନ୍ଦ ବ୍ୟାକୁଳ କଣ୍ଠରେ କହିଲେ, "ଭଉଣୀ ! ତୁମକୁ କ'ଣ ଶୁଭୁନାହିଁ ? ମୋତେ ପରା ବହୁତ ଶୋଷ ହେଉଛି । ମୁନ୍ଦେ ପାଣି ପିଇବାକୁ ଦିଅ, ନ ହେଲେ ମୋ ପ୍ରାଣ ଛାଡ଼ିଯିବ ।" ବାଳିକାଟି ଆନନ୍ଦଙ୍କ କଥାରେ ରାଜିହେଲା । ମୁହଁ ଟେକିଲା, ଯେମିତି ସେ କିଛି କହିବାକୁ ଚାହୁଁଛି । ହେଲେ ତା' ମୁହଁରୁ କିଛି କଥା ବାହାରୁନାହିଁ । ତା'ପାଟି ଯେମିତି ବନ୍ଦ ହୋଇଯାଇଛି ।

ଆନନ୍ଦ ପୁଣି ବ୍ୟାକୁଳ କଣ୍ଠରେ କହିଲେ, "ଭଉଣୀ ! କଥା କ'ଣ ? ତୁମେ କିଛି କହୁନ କି ପାଣି ମନ୍ଦେ ବି ଦେଉନାହିଁ !" ବାଳିକାଟି ଥରଥର ଗଳାରେ କହିଲା, "ହେ ଭଗବାନ ! ମୁଁ କେମିତି ଆପଣଙ୍କୁ ପାଣି ଦେବି ?"

ଆନନ୍ଦ ଉତ୍କଣ୍ଠାର ସହ ପଚାରିଲେ, "କାହିଁକି କ'ଣ ହେଲା କି ?" ବାଳିକାଟି ରହି ରହି କହିଲା, "ମୁଁ ହେଉଛି ଚଣ୍ଡାଳ କନ୍ୟା । ଆମେ ଅଛୁଆଁ ଜାତିର ଲୋକ । ମୁଁ ଆପଣଙ୍କୁ ପାଣି ପିଇବା ପାଇଁ ଦେଇପାରିବି ନାହିଁ ।"

ଆନନ୍ଦ କହିଲେ, "ଭଉଣୀ ! ମୋତେ ଶୋଷ ହେଉଛି । ମୁଁ ତୁମକୁ ପାଣି ମାଗୁଛି, ତୁମ ଜାତିକୁ ପାଣି ମାଗୁନାହିଁ ।"

ଏଇ କଥା ପଦକରେ ଯେମିତି ଯାଦୁ ଲୁଚିକରି ଥିଲା । ଚଣ୍ଡାଳ ବାଳିକା ଆନନ୍ଦ ମନରେ ଭିକ୍ଷୁ ଆନନ୍ଦଙ୍କୁ ପାଣି ପିଇବାକୁ ଦେଲା । ତା'ମନର ଭ୍ରମ କେଉଁଆଡ଼େ ଉଭେଇଗଲା । ସେହି ଚଣ୍ଡାଳ ବାଳିକାର ନାମ ବୌଦ୍ଧ ଜଗତରେ ଅମର ହୋଇ ରହିଲା ।

ଆନନ୍ଦ ଶେଷରେ କହିଲେ, "କେହି 'ଜାତି'ରେ ପରିଚିତ ହେବା କଥା ନୁହେଁ, ମାନବିକତା ଗୁଣରେ ପରିଚିତ ହେବା ଦରକାର ।"

ଇ-୧୯୨, ବରମୁଣ୍ଡା ହାଉସିଂ ବୋର୍ଡ କଲୋନି, ଭୁବନେଶ୍ୱର- ୩

ଶ୍ରୀ କାଞ୍ଚନାରାୟଣ ମହାନ୍ତି

## ନୂଆ ସିନେମା 'ପଦ୍ମାବତୀ'ରେ ଦୀପିକା

ଦୀପିକା; ନାୟିକା । ନିଜ ଅଭିନୟର ଭବିଷ୍ୟତ ପାଇଁ ସେ ସବୁବେଳେ ସତର୍କ । ସେ ଏଇବର୍ଷ ତିନିଟି ଛବିର ସୁଯୋଗକୁ ପ୍ରତ୍ୟାଖ୍ୟାନ କରି ଚାଲିଲେ । କାହାକୁ ଅଭିନୟ ପାଇଁ ସୁଯୋଗ ମିଳୁ ନ ଥିଲାବେଳେ ସେ ତାଙ୍କର ମନପସନ୍ଦ ଛବି ପାଇଁ ଚିନ୍ତା କରୁଛନ୍ତି ।

ବର୍ଷେ କାମ ନ କଲେ ଦୁଃଖ ନାହିଁ; କିନ୍ତୁ ଭଲ କହାଣୀ ଏବଂ ଉପଯୁକ୍ତ ଭୂମିକା ପ୍ରତି ଧ୍ୟାନ ନ ଦିଆଯାଏ, ତେବେ ବଲିଉଡ୍‌ର ନିଜର ସ୍ଥିତି ଦୋହଲିଯିବ ।

ସଂଜୟ ଲୀଲା ଭଂସାଲିଙ୍କର ବହୁ ପ୍ରତୀକ୍ଷିତ ଛବି 'ପଦ୍ମାବତୀ' ପାଇଁ ସେ ସମ୍ମତି ପ୍ରଦାନ କରିବାରୁ ଏବେ ସୁଟିଂ ଚାଲିଛି । ଏହି ଛବିରେ ଅଭିନୟ ପାଇଁ ସେ ବାରକୋଟି ପାରିଶ୍ରମିକ ନେଇଛନ୍ତି । ଏହି ଛବିରେ ତାଙ୍କର ମୁଖ୍ୟ ଭୂମିକା ରହିଛି । 'ପଦ୍ମାବତୀ' ଛବିର କହାଣୀ ଏବଂ




ସଂଜୟ ଲୀଲା ଭଂସାଲି

ନିଜର ଭୂମିକା ସମ୍ପର୍କରେ ବୁଝିଲା ପରେ ସେ ରାଜି ହୋଇଥିଲେ ।

ଐତିହାସିକ ପୃଷ୍ଠଭୂମି ଉପରେ ଆଧାରିତ ଚମତ୍କାର କଥାବସ୍ତୁକୁ ନେଇ ପ୍ରସିଦ୍ଧ ବଲିଉଡ୍ ନିର୍ଦ୍ଦେଶକ ସଂଜୟ ଯେତେବେଳେ ଏହାର କଳାକାରଙ୍କର ଚୟନ କରୁଥିଲେ, ସେ ଏହାର ମୁଖ୍ୟଚରିତ୍ରରେ ଆଲାଉଦ୍ଦିନ୍ ଖିଲିଜ୍ ଭୂମିକା ପାଇଁ ସଲ୍‌ମନ୍ ଏବଂ ପଦ୍ମାବତୀ ଭୂମିକା ପାଇଁ ଐଶ୍ୱର୍ଯ୍ୟା ରାୟ ବଚ୍ଚନଙ୍କୁ ପ୍ରସ୍ତାବ ଦେଇଥିଲେ ।

ଆରମ୍ଭରୁ ସଲ୍‌ମନ୍ ଏହି ଭୂମିକା ପାଇଁ ମନା କରି ଦେଇଥିଲେ । ଐଶ୍ୱର୍ଯ୍ୟା ଏହି ପ୍ରସ୍ତାବକୁ ଗ୍ରହଣ କରିଥିଲେ; କିନ୍ତୁ ଏକ ସର୍ତ୍ତ ରଖିଥିଲେ ଯଦି ସଲ୍‌ମନ୍ ଆଲ୍ଲାଉଦ୍ଦିନ୍ ଖିଲିଜ୍ ଭୂମିକାରେ ଅଭିନୟ କରନ୍ତି, ତେବେ ତାଙ୍କ ସହ ମୋର କୌଣସି ଦୃଶ୍ୟ ଯେପରି ନ ରହେ । ହେଲେ ଏହି ସର୍ତ୍ତରେ ନିର୍ଦ୍ଦେଶକ ସଂଜୟ ରାଜି ହୋଇ ନ ଥିଲେ ।

ଶେଷକୁ ଏହି ମୁଖ୍ୟ ଭୂମିକା ପାଇଁ ରଣବୀର ସିଂ ଏବଂ ଦୀପିକାଙ୍କୁ ଅଭିନୟ ପାଇଁ ଚୁକ୍ତି କରାଯାଇଥିଲା ।

## ପୂଜାରେ ଓଡ଼ିଆ ନୂଆ ଛବି

ଓଡ଼ିଆ ଛବି 'ମନମୟୂରୀ'ରେ ନିର୍ଦ୍ଦେଶକ ଅଛନ୍ତି ରୁଦ୍ରନାରାୟଣ ମହାନ୍ତି । ସେ ଅନେକ ନୂଆ କଳାକାରଙ୍କୁ ସୁଯୋଗ ଦେଇ ସେମାନଙ୍କ ସୃଜନ ପ୍ରତି ସମ୍ମାନ ଦେଇଥାନ୍ତି । ପ୍ରଜ୍ଞାଜିତ ଦାସ, ଡାକ ନାଁ ଜିତ୍ । ପ୍ରଥମେ ଭଜନ ଓ ଆଧୁନିକ ଆଲ୍‌ବମ୍‌ରେ ଅଭିନୟ କୌଶଳ ପ୍ରତିପାଦିତ କରିସାରିବା ପରେ ଏବେ ସେ ସିନେମା ଜଗତକୁ ପ୍ରବେଶ କରିଛନ୍ତି । କେନ୍ଦ୍ରାପଡ଼ା ହଳଦିଆ ଗ୍ରାମରେ ଜନ୍ମ । ଜିତ୍ ଓଡ଼ିଆ ସିନେମାରେ ବାଜିମାତ୍ କରିବା ଶୁଭ ସୂଚନା ଜଣାଯାଉଛି ।

ସେ ପିଲାଦିନୁ ଚଳଚ୍ଚିତ୍ରରେ ଅଭିନୟର ସ୍ୱପ୍ନ ଦେଖି ଏବେ ସାକାର କରି ମଞ୍ଚ ନାଟକରେ ଅଭିନୟ କରି ବନ୍ଧୁ



ଓ ଗୁରୁଜନମାନଙ୍କର ପ୍ରେରଣା ଓ ଉତ୍ସାହରେ ଆଗେଇଚାଲିବାର ସ୍ୱପ୍ନ ନେଇ ଜିତ୍ ଏବେ ଖୁବ୍ ଆଶାବାଦୀ ।

**'ଏମିତି ବି ହୋଇପାରେ'**-- ରାଜୀବ ମହାନ୍ତିଙ୍କ ନିର୍ଦ୍ଦେଶିତ ନୂଆ ଓଡ଼ିଆ ଛବି 'ଏମିତି ବି ହୋଇପାରେ' ଦର୍ଶକମାନଙ୍କୁ ଗାଁ'ରେ ଥିବା ଲୋକମାନଙ୍କ ଭିତରେ ଥିବା ନିର୍ମଳ ଭଲପାଇବା କଥା କହିବ । ଏହାର କାହାଣୀ ଲେଖିଛନ୍ତି ଚିନ୍ମୟୀ ମହାନ୍ତି । ସଂଳାପ ଲେଖିଛନ୍ତି ଶୁଭଜିତ୍ ଆନନ୍ଦ । ସଂଳାପଗୁଡ଼ିକ ମଧ୍ୟ ମନଛୁଆଁ ହୋଇପାରିଛି । କଥାବସ୍ତୁ ଓଡ଼ିଆ ଚଳଣିକୁ ନେଇ ଆଗେଇଚାଲିଛି । ବଡ଼କଥା ଯେ ଏଥିରେ ବହୁ ନୂତନ ପ୍ରତିଭାବାନ୍ ଅଂଶଗ୍ରହଣ କରିଛନ୍ତି ।



ସେମାନଙ୍କ ଭିତରେ ମୁଖ୍ୟ ନାୟକ-ନାୟିକା ହେଲେ ଶଶିକାନ୍ତ-ରୁପାଲି ।

'ବକ୍ରତୁଣ୍ଡ କ୍ରିଏସନ୍' ବ୍ୟାନର୍‌ରେ ନିର୍ମିତ ଏହି ଛବିର ପ୍ରଯୋଜକ ହେଲେ ରବି ନାରାୟଣ ଦାସ । ରାଜୀବ ମହାନ୍ତି ନିର୍ଦ୍ଦେଶକ ଭାବରେ ଚାରି, ପାଞ୍ଚଟି ଛବିରେ ତାଙ୍କର ସଫଳତାର ପ୍ରମାଣ ଦେଇସାରିଛନ୍ତି ।

ଏହି ଛବିରେ ଯେଉଁ ଅନ୍ୟ କଳାକାରମାନେ ସେମାନଙ୍କର ପ୍ରତିଭା ପ୍ରଦର୍ଶନ କରିଛନ୍ତି, ସେମାନେ ହେଲେ– ସୁମନ୍, ଦୀପକ୍, ସୁଇଟି, ରୋଜି, ପଦ୍ମଲୋଚନ, ସୁଲୋଚନା, ସଂଗ୍ରାମ, ପ୍ରହ୍ଲାଦ, ହରିହର ଏବଂ ଅନ୍ୟମାନେ ।



ଏ ବର୍ଷର ନୂଆ ଓଡ଼ିଆ ଛବିଗୁଡ଼ିକର ପ୍ରାୟତଃ ସଫଳତାର ସହ ଶୁଭମୁକ୍ତି ସହ ଭଲ ବ୍ୟବସାୟ କରିଥିବା ଦେଖାଯାଏ । ସେଗୁଡ଼ିକ ମୁଖ୍ୟତଃ ହେଲେ– 'ମୁଁ ଖାଣ୍ଟି ଓଡ଼ିଆ ଝିଅ', 'ଭୈରବ', 'ଜଷ୍ଟ ମୋହବତ୍', 'ସପନର ପଥେ ପଥେ', 'ଅଭୟ', 'ଦି ଏଣ୍ଡ୍', 'ମିଠା ମଠା', 'ଟପୋରି', 'କଥା ଦେଲି ମଥା ଛୁଇଁ', 'ତୁଳସୀ ଅପା', 'ବାବୁଲା ବାରବୁଲା', 'ଶିବା', 'ହିରୋ ନଂ ୧' ।

ଛବିର ସଂଖ୍ୟା ବଢ଼ିବା ଯେତିକି ବଡ଼ କଥା ନୁହେଁ, ଏହାର ଗୁଣାତ୍ମକ ମାନ ଓ ମୌଳିକ କାହାଣୀ ଅତି ଗୁରୁତ୍ୱପୂର୍ଣ୍ଣ । ଆମର ସଂସ୍କୃତି, ଆଦର୍ଶ ଏଥିରେ ପ୍ରଦର୍ଶିତ ହେଉ ।

ଆଶ୍ରମ, ଶ୍ରୀବିହାର କଲୋନୀ, କଟକ-୮

---

ଧନ୍ଦାର ଉତ୍ତର– ସରସ୍ୱତୀ



## ପୁସ୍ତକ ପରିଚୟ

**ମୋ ନାଲି ଛତା-- ଲେଖିକା-କନକ ମଞ୍ଜରୀ ପଟ୍ଟନାୟକ,** ସେକ୍ଟର- ୨/ଏମ୍.ଆଇ.ଜି-୩୨୫, ନୀଳାଦ୍ରି ବିହାର, ଭୁବନେଶ୍ୱର- ୨୧, ମୂଲ୍ୟ- ୫୦ଟଙ୍କା

ଗପରୁ ଶିକ୍ଷା, ଜେଜେମା'ଙ୍କର ରସାଳ ପ୍ରୀତି, ଗୁଣ୍ଡୁଚି ମୂଷା, ମୋ' ଗାଆଁ ଦାଣ୍ଡ ଇତ୍ୟାଦି ଶିଶୁ-କବିତା ଏହି ଡିମେଇ ଆକାରର ପୁସ୍ତକରେ ସ୍ଥାନିତ ହୋଇଛି । ପ୍ରତି ପୃଷ୍ଠାରେ ସୁଦୃଶ୍ୟ ଚିତ୍ର ରହିଛି । କବିତାଗୁଡ଼ିକରେ ବଡ଼ ଅକ୍ଷର, ବେଶ୍ ସ୍ପଷ୍ଟ ଓ ସରଳ ଭାଷାରେ ଲିଖିତ । ରଂଗିନ୍ ପ୍ରଚ୍ଛଦରେ ତିନିଟି ପିଲା ନାଲି ରଂଗର ଛତା ଧରି ଠିଆ ହେବାର ଦୃଶ୍ୟ ଚମତ୍କାର ।

**କଥା ଓ କଥାକାର-- ଲେଖିକା- ଡ. ପ୍ରଭାତୀ ମିଶ୍ର, ପ୍ରକାଶକ- ଚିନ୍ମୟ ପ୍ରକାଶନ,** ବାଲୁବଜାର, କଟକ, ମୂଲ୍ୟ- ୪୦ଟଂକା, ଦୂରଭାଷ- ୯୯୩୭୦୮୩୩୪୫

ବ୍ୟୁମେଣ୍ଟ୍ ଓ ଭିଲେନ୍ୟୁ (ତିନି କନ୍ୟା), ନାନ୍ କିଛି ନୀମି (ଛୁଆ, କୋକି, ଗନ୍), ଲାରୀ ଡନ୍ (ବାଘକୁ ବିଶ୍ୱାସ ନାହିଁ) ଇତ୍ୟାଦି ଆକର୍ଷଣୀୟ ଶିଶୁଗଳ୍ପ ଏ ଡିମେଇ ଆକାରର ପୁସ୍ତକଟିରେ ରହିଛି ।

ପ୍ରତ୍ୟେକ ଗଳ୍ପରେ ନିଆରା ଆକର୍ଷଣ ଓ ଖୁବ୍ ଉତ୍ସାହପ୍ରଦ ଘଟଣା ରହିଛି । ଚିତ୍ର ମଧ୍ୟ ପ୍ରତ୍ୟେକ ଗଳ୍ପର ଶୋଭା ବୃଦ୍ଧି କରୁଛି । ପୁସ୍ତକଟି ପିଲାଙ୍କ ଦ୍ୱାରା ଆଦୃତ ହେଉ- ଏତିକି କାମନା ।

**କିରଣ ଜ୍ୟୋତ୍ସ୍ନା--ଲେଖକ- ଶ୍ରୀ ହଂସନାଥ ମୁଦୁଲି, ପ୍ରକାଶକ- ଆମ୍ରମ୍,** ୫୦/୧୯୬୪ ଡୁମ୍ଡୁମା (କ), ଖଣ୍ଡଗିରି, ଭୁବନେଶ୍ୱର- ୭୫୧୦୩୦, ମୂଲ୍ୟ- ୧୨୦ ଟଂକା ।

ମହତ୍ ଉଦ୍ଦେଶ୍ୟ, ଆଲୋକ ଓ ଅନ୍ଧକାର, ଜଳ ହିଁ ଜୀବନ, ଛତା ଓ ଜୋତା, କଳି ତୁଟିଲା, ଉପସ୍ଥିତ ବୁଦ୍ଧି ଆଦି ୩୧ଟି ଶିଶୁ ଗଳ୍ପ ଏହି ଡିମେଇ ଆକାରର ପୁସ୍ତକଟିରେ ରହିଛି । ପ୍ରତ୍ୟେକ ଗଳ୍ପରେ ପିଲାଙ୍କ ମନଲାଖି ଚିତ୍ର ରହିଛି । ଗପଗୁଡ଼ିକ ଶିକ୍ଷଣୀୟ ହୋଇଛି; ଯେହେତୁ ପଶୁ, ପକ୍ଷୀମାନଙ୍କର କାହାଣୀରେ ପୁସ୍ତକଟି ଭରପୂର ।

ରଂଗିନ୍ ପ୍ରଚ୍ଛଦରେ ମୂଷା, ବିରାଡ଼ି, ପ୍ରଜାପତି ସହିତ ଦୁଇଟି ପିଲା ପାଠ ପଢୁଥିବାର ଚିତ୍ର ଖୁବ୍ ସୁନ୍ଦର ହୋଇଛି । ପୁସ୍ତକଟି ଆଦୃତ ହେବାର ଆଶା ।

---

( ୫୪ ପୃଷ୍ଠାର ଅବଶିଷ୍ଟାଂଶ )

୭ । ୯- ମୁମ୍ବାଇଠାରେ ୧୯୯୩ରେ ଘଟିଥିବା ଧାରାବାହିକ ବୋମା ବିସ୍ଫୋରଣ ମାମଲାରେ ଦୋଷୀ ସାବ୍ୟସ୍ତ ତାହିର୍ ମର୍ଚ୍ଚାଣ୍ଟ, ଫିରୋଜ ଅବ୍ଦୁଲ୍ ରସିଦ ଖାଁଙ୍କୁ ଫାଶୀ ଦଣ୍ଡ ।

୧୦ । ୯- ସୁପ୍ରିମ୍ କୋର୍ଟର ବରିଷ୍ଠ ଆଇନଜୀବୀ ରାମ୍ ଜେଠ୍‌ମାଲାନୀଙ୍କ ଓକିଲାତିରୁ ସନ୍ନ୍ୟାସ ଘୋଷଣା ।

୧୨ । ୯- ଛାଡ଼ପତ୍ର ପାଇଁ ଆବେଦନ କରୁଥିବା ହିନ୍ଦୁ ଦମ୍ପତିଙ୍କୁ ୬ମାସ ଅପେକ୍ଷା କରିବାକୁ ବାଧ୍ୟ କରାଯିବ ନାହିଁ ବୋଲି ସୁପ୍ରିମ୍ କୋର୍ଟର ରାୟ ।

୧୪ । ୯- ମୁମ୍ବାଇଠାରୁ ଅହମ୍ମଦାବାଦ୍ ମଧ୍ୟରେ ଚଳାଚଳ କରିବାକୁ ଥିବା ବୁଲେଟ୍ ଟ୍ରେନ୍‌ର ଶିଳାନ୍ୟାସ ।

୧୮ । ୯- ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ଯୋଗୀ ଆଦିତ୍ୟନାଥ ଓ ଅନ୍ୟ ମନ୍ତ୍ରୀଙ୍କର ବିଧାନ ପରିଷଦର ସଦସ୍ୟ ଭାବେ ଶପଥ ଗ୍ରହଣ ।

- ସିଓଲ୍‌ଠାରେ ଖେଳାଯାଇଥିବା ସୁପର୍ ସିରିଜ୍ ବ୍ୟାଡ୍‌ମିଣ୍ଟନ୍ ଚମ୍ପିଆନ୍‌ସିପ୍‌ରେ ପି.ଭି. ସିନ୍ଧୁଙ୍କର ଚମ୍ପିଆନ୍ ଆଖ୍ୟା ଅର୍ଜନ ।

**ବିଦେଶ ଖବର**

୩୧ । ୮- ବେନଜିର ଭୁଟ୍ଟୋ ହତ୍ୟାମାମଲାରେ ପାକିସ୍ତାନର ପୂର୍ବତନ ରାଷ୍ଟ୍ରପତି ପରଭେଜ୍ ମୁଶାରଫ୍ ପଳାତକ ଘୋଷିତ ।

୮ । ୯- ମେକ୍ସିକୋର ଦକ୍ଷିଣ ଉପକୂଳ ଅଞ୍ଚଳରେ ଭୂକମ୍ପ ଯୋଗୁଁ ୩୨ଜଣ ମୃତ ।

୧୫ । ୯- ଶନିଗ୍ରହ ଅଭିମୁଖେ ନାସା ପଠାଇଥିବା କାସିନି ମହାକାଶ ଯାନ ଧ୍ୱଂସ । ୨୦ ବର୍ଷ ଧରି ଏହା ଶନିଗ୍ରହ ଅଭିମୁଖେ ଯାତ୍ରା କରୁଥିଲା ।

## ଶବ୍ଦଧନ୍ଦା ଅକ୍ଟୋବର-୨୦୧୭

ଶ୍ରୀ ଧରଣୀଧର ବେହେରା

**୧ । କାଗଜରେ ବା କାର୍ଡ୍‌ରେ ଘର କାଟି ଉତ୍ତର ଲେଖନ୍ତୁ ।**

**୨ । ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।**

**୩ । ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।**

**୪ । ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।**

**୫ । ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।**

**୬ । ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨ ।୧୦ ।୨୦୧୭**

**୭ । ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।**

| ୧ | | ୨ | ୩ | * | ୪ | ୫ |
|---|---|---|---|---|---|---|
| | ୬ | | | ୭ | | |
| ୮ | | | ୯ | | * | ୧୦ |
| * | ୧୧ | | | ୧୨ | ୧୩ | |
| ୧୪ | | ୧୫ | | | | |
| ୧୬ | | | * | ୧୭ | | ୧୮ |
| | * | | ୧୯ | | | |

**--------------- ସୂଚନା ---------------**

**ବାମରୁ ଡାହାଣ--** ୧ । କାଉ (୩), ୪ । କଦମ୍ବଫୁଲ ବା ଗଛ ( ୨ ), ୭ । ଶୁଷ୍କ ତୃଣ ବିଶେଷ( ୨ ), ୮ । ନୃତ୍ୟ ( ୨ ), ୯ । ଦୂତ ( ୨ ), ୧୧ । ଦୃଷ୍ଟି (୩), ୧୨ । ଶ୍ରୀକୃଷ୍ଣ (୩), ୧୪ । ମାଗଣା ବା ଉପୁରି ଭୋଜନ ( ୨ ), ୧୫ । ପଙ୍ଗୁ / ଅବାଧ (୩), ୧୬ । ଶିଶୁରୋଗ ବିଶେଷ (୩), ୧୭ । ପୁଣି (୩), ୧୯ । ମୁଣ୍ଡର ଖୋଷା(୩) ।

**ଉପରୁ ତଳ--** ୧ । ଛଳନା (୩), ୨ । ଅଶ୍ୱରକ୍ଷକ (୩), ୩ । ଯେ ରାତ୍ରିରେ ବିଚରଣ କରେ (୪), ୪ । ପକ୍ଷୀର ବସା ( ୨ ), ୫ । ପତ୍ର ( ୨ ), ୬ । ଚକ୍ଷୁ (୩), ୭ । ଠେକୁଆ (୪), ୧୦ । ଭିତର (୩), ୧୩ । ରାତ୍ରି (୪), ୧୪ । ନିଷେଧ / ମନା (୩), ୧୫ । ଶତ୍ରୁ (୩), ୧୮ । ଲକ୍ଷ୍ମୀ ( ୨ ) ।

*--ମୋଗଲପାଟଣା, ରାହାଣିଆଁ, କଟକ- ୭୫୪୨୦୪*

---

**ସେପ୍ଟେମ୍ବର ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)–** ୧ । ତ୍ରିନେତ୍ର, ୩ । ଯତ୍ର, ୬ । ବନସ୍ତ, ୭ । କାବିଲ / ଅଉଲ / ଅସଲ ୮ । କବିରାଜ, ୧୦ । ନାଦାନି, ୧୨ । ହରିତ, ୧୪ । ଖ୍ୟାତ, ୧୬ । ଆୟ, ୧୭ । ଦନ୍ତାବଳ ।

**ଉପରୁ ତଳ–** ୧ । ତ୍ରିପିଟକ, ୨ । ନକଲ, ୪ । ତ୍ରସ୍ତ, ୫ । ମକା / ଯଅ, ୬ । ବନ୍ଦନା, ୯ । ଜନପଦ, ୧୧ । ନିଶାଜଳ, ୧୨ । ହଠାତ୍‌, ୧୩ । ତନ୍ମୟ, ୧୫ । ତନୁ ।

---

**ଗତମାସର ଠିକ୍ ଉତ୍ତରଦାତା–** **ରାଜକିଶୋର ଭୋଇ,** ମସିଣା, ଲାଠୋର, ବଲାଙ୍ଗୀର; **ରସାନନ୍ଦ ଘଡ଼େଇ,** ପୁଆଣିଆ, ଗମ୍ଭାରିଡିହି, ନୟାଗଡ; **ନିଶିକାନ୍ତ ବେହେରା,** ବେଡ଼ାପଡ଼ା, ହିନ୍ଦୋଳ ରୋଡ୍‌, ଢେଙ୍କାନାଳ; **ହେଜାବ୍ ନାହିଦ୍ ଓ ପ୍ରିୟଙ୍କା ଟୁଡୁ(୯ମ)** ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାନୁଷ୍ଠାନ, ଚମ୍ପୁଆ, କେନ୍ଦୁଝର; **ପ୍ରଦୀପ କୁମାର ଦାଶ,** ହରିଶଙ୍କର ରୋଡ୍‌, ବଲାଙ୍ଗୀର; **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର ।

# ପୃଥିବୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୨୨ । ୮- ବିଜେପୁର ବିଧାୟକ ସୁବଳ ସାହୁଙ୍କର ୫୬ ବର୍ଷରେ ପରଲୋକ ।

୨୪ । ୮- ସାରା ବିଶ୍ୱରେ ଘାତକ ସାଜିଥିବା ଇଣ୍ଟରନେଟ୍ ଗେମ୍ 'ବ୍ଲୁ ହ୍ୱେଲ୍' ଓଡ଼ିଶାା ପୁଲିସ୍‌ର ହାଇଆଲର୍ଟ ଜାରି ।

୩୦ । ୮- ରାଜ୍ୟ ଭିଜିଲାନ୍ସ ନିର୍ଦ୍ଦେଶକ ଥିବା ବରିଷ୍ଠ ଆଇ.ପି.ଏସ୍ ଅଧିକାରୀ ଡାକ୍ତର ରାଜେନ୍ଦ୍ର ପ୍ରସାଦ ଶର୍ମା ପୁଲିସ୍ ମହାନିର୍ଦ୍ଦେଶକ ପଦରେ ଅବସ୍ଥାପିତ ।

- ରାଜ୍ୟର ୧୬୦୩ ଟି ସରକାରୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ସରକାରୀ ଉଚ୍ଚ ବିଦ୍ୟାଳୟ ସହିତ ମିଶାଇଦେବାକୁ ସରକାରଙ୍କର ନିଷ୍ପତ୍ତି ।

୨ । ୯- ଭିତରକନିକାରେ ପକ୍ଷୀ ଗଣନାରେ ୧,୦୪,୪୯୦ ଦେଶୀୟ ପକ୍ଷୀ ଚିହ୍ନିତ ।

୪ ।୯- ବ୍ୟାସକବି ଓ ମହିମା ସମ୍ମାନପ୍ରାପ୍ତ ସୁସାହିତ୍ୟିକ, ପ୍ରାବନ୍ଧିକ, ନାଟ୍ୟକାର ଓ ପ୍ରାଧ୍ୟାପକ ଶଙ୍କର୍ଷଣ ଜେନାଙ୍କର ୬୩ ବର୍ଷରେ ପରଲୋକ ।

୫ । ୯- ସପ୍ତମ ବେତନ କମିଶନଙ୍କ ସୁପାରିଶରେ ରାଜ୍ୟ କର୍ମଚାରୀମାନଙ୍କ ସଂଶୋଧିତ ବେତନ ଓ ପେନ୍‌ସନ୍ ବୃଦ୍ଧି ।

୮।୯- ଭୁବନେଶ୍ୱରର ବମିଖାଲଠାରେ ନିର୍ମାଣାଧୀନ ଓଭରବ୍ରିଜ୍ ଭୁଶୁଡ଼ି ପଡ଼ିବାରୁ ଜଣେ ମୃତ ଓ ୧୦ଜଣ ଆହତ ।

୧୧ । ୯- ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ତଥା ବିଜେଡିର ବରିଷ୍ଠ ନେତା ସୟଦ୍ ମୁସ୍ତାଫିଜ୍ ଅହମ୍ମଦଙ୍କର ୭୬ ବର୍ଷରେ ପରଲୋକ ।

୧୨।୯- କଳାବିକାଶ କେନ୍ଦ୍ରରେ ଚାଲିଥିବା ବିଶ୍ୱ ନାଟ୍ୟମେଳା-୨୦୧୭ ଉଦ୍‌ଯାପିତ । ଓଡ଼ିଆ ନାଟକ 'କାରୁବାକୀ' ଓ ଏହାର ନିର୍ଦ୍ଦେଶକ ମାନସ ରଂଜନ ମିଶ୍ରଙ୍କୁ ଶ୍ରେଷ୍ଠ ନିର୍ଦ୍ଦେଶକ ସମ୍ମାନ ପ୍ରଦାନ ।

## ଭାରତ ଖବର

୨୨ । ୮- ଉଚ୍ଚତମ ନ୍ୟାୟାଳୟଙ୍କର ଐତିହାସିକ ରାୟରେ ମୁସଲମାନ ସମ୍ପ୍ରଦାୟର 'ତିନି ତଲାକ୍'କୁ ନିଷିଦ୍ଧ ଘୋଷଣା ଏବଂ ଏ ସମ୍ପର୍କରେ ନୂଆ ଆଇନ୍ କରିବାକୁ ବିଚାରପତିମାନେ ସରକାରଙ୍କୁ ୬ ମାସ ସମୟ ଦେଇଛନ୍ତି ।

୨୪ । ୮- ବ୍ୟକ୍ତିଗତ ଗୋପନୀୟତାକୁ ସୁରକ୍ଷା ଦିଆଯିବ ଓ ଏହାର ପ୍ରତ୍ୟେକ ବ୍ୟକ୍ତିର ମୌଳିକ ଅଧିକାର ବୋଲି ସୁପ୍ରିମ୍ କୋର୍ଟର ଗୁରୁତ୍ୱପୂର୍ଣ୍ଣ ରାୟ ।

୨୫ । ୮- ଆତ୍ମଘୋଷିତ ଈଶ୍ୱରଙ୍କ ଦୂତ ଗୁରୁମିତ୍ ରାମ ରହିମ୍ ବଳାତ୍କାର ମାମଲାରେ ଦୋଷୀ ସାବ୍ୟସ୍ତ ଓ ତାଙ୍କୁ ୨୦ ବର୍ଷ ଜେଲ୍‌ଦଣ୍ଡ ଘୋଷଣା ।

୨୮ । ୮- ଦୁଇମାସ ଧରି ମୁହାଁମୁହିଁ ଅବସ୍ଥାରେ ଥିବା ସିକିମ୍‌ର ଡୋକ୍‌ଲାମ୍‌ଠାରେ ଭାରତ ଓ ଚୀନ୍ ସୈନ୍ୟଙ୍କର ପ୍ରତ୍ୟାହାର ପ୍ରକ୍ରିୟା ଆରମ୍ଭ । ଭାରତର କୂଟନୈତିକ ବିଜୟ ।

୨୯ । ୮- ବିଧାନସଭାର ଉପନିର୍ବାଚନରେ ଦିଲ୍ଲୀରେ ଆପ୍, ଗୋଆରେ ବିଜେପି ଓ ଆନ୍ଧ୍ରରେ ଟିଡିପି ଦଳ ବିଜୟୀ ।

-ରାଜ୍ୟରେ ୭ମ ବେତନ କମିଶନ କାର୍ଯ୍ୟକାରୀ । ଏହା ଜାନୁଆରୀ ୨୦୧୬ରୁ ଲାଗୁ ହେବ ।

୨୯ । ୮- ଭାରତୀୟ କ୍ରୀଡ଼ା ପୁରସ୍କାର ପ୍ରଦାନ ଉତ୍ସବରେ ପ୍ରଥମ ପାରା ଆଥେଲେଟ୍ ଭାବେ ଦେବେନ୍ଦ୍ର ଝାଝେରିଆ ଓ ହକିରେ ସର୍ଦାର ସିଂହଙ୍କୁ ସମ୍ମାନଜନକ 'ରାଜୀବ ଗାନ୍ଧୀ ଖେଳରତ୍ନ ପୁରସ୍କାର' ଏବଂ ବକ୍ସିଙ୍ଗ୍ ପ୍ରଶିକ୍ଷକ ବ୍ରଜ ଭୂଷଣ ମହାନ୍ତିଙ୍କୁ ଦ୍ରୋଣାଚାର୍ଯ୍ୟ ପୁରସ୍କାର ପ୍ରଦାନ ।

୩୧। ୮- ଦୀର୍ଘ ତିନି ଦିନର ବର୍ଷା ପରେ ମୁମ୍ବାଇ ମହାନଗରୀର ଦକ୍ଷିଣରେ ଏକ କୋଠା ଭୁଷୁଡ଼ି ୨୨ ମୃତ ।

୩ । ୯- କେନ୍ଦ୍ର ମନ୍ତ୍ରୀମଣ୍ଡଳର ତୃତୀୟ ଏବଂ ମହତ୍ତ୍ୱପୂର୍ଣ୍ଣ ପୁନର୍ଗଠନ ସଂଘଟିତ । ୪ଜଣ କ୍ୟାବିନେଟ୍ ପାହ୍ୟାକୁ ଉନ୍ନୀତ ଏବଂ ମନ୍ତ୍ରି ପରିଷଦରେ ୪ଜଣ ପୂର୍ବତନ ପ୍ରଶାସକ ସାମିଲ୍ । ୨୮ଜଣ କ୍ୟାବିନେଟ୍, ୧୧ଜଣ ସ୍ୱାଧୀନ ଏବଂ ୩୭ଜଣ ରାଷ୍ଟ୍ରମନ୍ତ୍ରୀ ଏବଂ ଧର୍ମେନ୍ଦ୍ର ପ୍ରଧାନଙ୍କୁ ପେଟ୍ରୋଲିୟମ ବିଭାଗ ପ୍ରଦାନ ।

୪ ।୯- ନବମ ବ୍ରିକ୍ସ ସମ୍ମିଳନୀରେ ଭାରତର ବୃହତ୍ କୂଟନୈତିକ ସଫଳତା ହାସଲ । ଦୁଇଜଣ ଆତଙ୍କବାଦୀ ସଂଗଠନ– ଲକ୍ସର –ଇ-ତୋଏବା ଓ ଜୈସ-ଇ-ମହମ୍ମଦର ନାମ ଉଲ୍ଲେଖ ଏବଂ ଏନ୍‌ଏସଜିରେ ଭାରତର ସଦସ୍ୟତାକୁ ବ୍ରିକ୍ସ ରାଷ୍ଟ୍ରସମୂହଙ୍କର ସମର୍ଥନ ।

୫ । ୯- ଲକ୍ଷ୍ନୌ , ଗୋରଖପୁର, ଫାରୁକାବାଦ ହସ୍‌ପିଟାଲରେ ମାସକରେ ୪୯ ଶିଶୁ ମୃତ । ଦୁଇ ଅଧିକାରୀ ବହିଷ୍କୃତ ।

*(ଅବଶିଷ୍ଟାଂଶ ୫୨ ପୃଷ୍ଠାରେ)*

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597